# ସହିଦ

# ଲକ୍ଷ୍ମଣ ନାୟକ




ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ଓଡ଼ିଶା, ଭୁବନେଶ୍ୱର

# ସହିଦ ଲକ୍ଷ୍ମଣ ନାୟକ


ଲେଖକ : ଡକ୍ଟର ଉଦ୍ଧବ ଚରଣ ନାୟକ

ପ୍ରଥମ ପ୍ରକାଶ ୧୯୯୭

ନୂତନ ମୁଦ୍ରଣ : ୨୦୦୧

ପ୍ରକାଶକ ନିର୍ଦ୍ଦେଶକ
ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ୟୁନିଟ୍-୫, ଭୁବନେଶ୍ୱର-୭୫୧୦୦୧

ପ୍ରକାଶନ ସଂଖ୍ୟା ଏସ୍. ଆର୍. ସି.୨୧୬-୧୭/୯୭

ମୁଦ୍ରଣ ସଂଖ୍ୟା ୨,୦୦୦

ମୁଦ୍ରଣ ନିସ୍ୱାସ, ୩, ଚନ୍ଦ୍ରଶେଖରପୁର, ଭୁବନେଶ୍ୱର-୭୫୧୦୨୩

ମୂଲ୍ୟ ଚାରି ଟଙ୍କା ମାତ୍ର


# SAHID LAKSHMAN NAYAK


Author **Dr. Uddhab charan Nayak**

1st Edition 1997

New Edition 2001

Published by : Director,
**State Resource Centre for Adult Education, Orissa**
Janasiksha Bhawan, Unit-V, Bhubaneswar - 751001

Publication No. : SRC 216-17/97

No of copies printed Two Thousand

Printed at NISWASS, 3, Chandrasekharpur,
Bhubaneswar - 751023

Price Rupees Four only.

## ପରିବାର ଓ ପିଲାଦିନ

କୋରାପୁଟ ଓଡ଼ିଶାର ଗୋଟିଏ ବଡ଼ ଆଦିବାସୀ ବହୁଳ ଜିଲ୍ଲା । ଏଇ ଜିଲ୍ଲାରେ ନାନା ଜାତିର ଆଦିବାସୀ ରହନ୍ତି । ଏବେ ଏଇ ଜିଲ୍ଲା ଚାରୋଟି ଜିଲ୍ଲାରେ ଭାଗ ହୋଇ ଯାଇଛି । କୋରାପୁଟ, ମାଲକାନାଗିରି, ନବରଙ୍ଗପୁର ଆଉ ରାୟଗଡ଼ା । ମାଲକାନାଗିରି ଆଗ ଥିଲା ଗୋଟିଏ ତାଲୁକ । ଏଇ ତାଲୁକରେ ତେନ୍ତୁଳିଗୁମ୍ମା ବୋଲି ଗାଁଟିଏ । ଏଇଠି କେତୋଟି ଭୂମିଆ ଆଦିବାସୀ ପରିବାରର ଘର । ଭୂମିଆମାନେ ଦୁଇପ୍ରକାରର । ବଡ଼ଭୂମିଆ ଆଉ ସାନ ଭୂମିଆ । ବଡ଼ ଭୂମିଆ ବଡ଼ । ଏଇ ଗାଁରେ ରହୁଥିଲେ ପଦ୍ମଲମ ନାୟକ ବୋଲି ଜଣେ ବଡ଼ ଭୂମିଆ ଜାତିର ଆଦିବାସୀ । ସେ ଥିଲେ ସେଇ ଇଲାକାର ମୁଖିଆ । ବେଜୁଣିଗୁଡ଼ା, ଲେଜିଗୁଡ଼ା, ଅଁଳାଗୁଡ଼ା ଓ ତେନ୍ତୁଳିଗୁମ୍ମା ଗାଁଗୁଡ଼ିକ ଲଗାଲଗି । ଏଇ ଗାଁମାନଙ୍କରେ ଘର ସଂଖ୍ୟା ସେତେବେଳେ ଥିଲା ଦୁଇଶହ ସରିକି । ଆଉ ଲୋକ ସଂଖ୍ୟା ଥିଲା ପ୍ରାୟ ହଜାରରୁ ଟିକିଏ ଅଧିକ । ଏମାନଙ୍କର ମୁଖିଆ ଥିଲେ ପଦ୍ମଲମ ନାୟକ ।

ପଦ୍ମଲମଙ୍କୁ ଜୟପୁରର ରାଜା ବେଜୁଣିଗୁଡ଼ା, ଲେଜିଗୁଡ଼ା, ଅଁଳାଗୁଡ଼ା ଓ ତେନ୍ତୁଳିଗୁମ୍ମା ଇଲାକାର ମୁସ୍ତାଦର କରି ଦେଇଥିଲେ ।

ପଦଲମ ଥିଲେ ବଡ଼ ଲୋକପ୍ରିୟ । ତାଙ୍କୁ ସମସ୍ତେ ଭାରି ଭଲ ପାଉଥିଲେ । ପଦଲମ ଟିକିଏ ଟିକିଏ ପାଠ ପଢ଼ିଥିଲେ । ଅକ୍ଷର ଚିହ୍ନିପାରୁଥିଲେ । ହେଲେ ସେମିତି ଲେଖିପାରୁ ନ ଥିଲେ । ପଦଲମ ଦେଖିବାକୁ ଥିଲେ ଖୁବ୍ ମୋଟାସୋଟା ବଳବାନ ଆଉ ବୁଦ୍ଧିମାନ । ଜୟପୁର ରାଜା ତାଙ୍କୁ ଖୁବ୍ ଭଲ ପାଉଥିଲେ । ପଦଲମଙ୍କର ଥିଲେ ତିନି ପୁଅ । ବଡ଼ ସନିଆ । ଲକ୍ଷ୍ମଣ ମଝିଆଁ । ଧନ ସବୁଠାରୁ ସାନ । ପଦଲମ ନିଜଭାଇ ମାନଙ୍କ ସହ ଏକାଠି ରହୁଥିଲେ । ପରିବାରଟି ବଡ଼ । ହେଲେ ବି ସେମାନେ ମିଳିମିଶି ଭଲରେ ଚଳୁଥିଲେ ।

ଆଜିକି ପ୍ରାୟ ଶହେ ବର୍ଷ ତଳର କଥା । ୧୮୯୯ ମସିହା ନଭେମ୍ବର ମାସ ବାଇଶି ତାରିଖ । ଏଦିନ ପଦଲାମ ନାୟକଙ୍କ ମଝିଆଁ ପୁଅ ଲକ୍ଷ୍ମଣ ଜନମ ହୋଇଥିଲେ । ସେ ଜଣେ ବଡ଼ ଧନୀ ଲୋକ । ସେତେବେଳେ ତାଙ୍କର ଶହେ ଏକରଯାଏ ଜମିଥିଲା । ଗାଈଗୋରୁ ଛେଳିମେଣ୍ଢାରେ ତାଙ୍କର କିଛି ଅଭାବ ନ ଥିଲା ।

ପିଲାଦିନେ ଲକ୍ଷ୍ମଣ ବିଲକୁ ଯାଉଥିଲେ । ଛେଳିମେଣ୍ଢା ଚରାଉଥିଲେ । ଗାଁ ପାଖରେ ବଣ ଜଙ୍ଗଲ ପୂରି ରହିଥିଲା । ଲକ୍ଷ୍ମଣ ପିଲାଦିନେ ଶିକାର କରିବାକୁ ଖୁବ୍ ଭଲପାଉଥିଲେ । ଧନୁତୀର ଧରି ବଣ ପାହାଡ଼ରେ ଘୂରି ବୁଲୁଥିଲେ । ତାଙ୍କର କାହାକୁ ଭୟ ନ ଥିଲା । ସେତେବେଳେ ଏଇ ବଣ ପାହାଡ଼ ଘେରା ଗାଁ ଗହଳିରେ ପାଠପଢ଼ିବା ପାଇଁ ସ୍କୁଲ ନ ଥିଲା । ଏଣୁ ଲକ୍ଷ୍ମଣ ନାୟକ ସେମିତି କିଛି ପାଠ ପଢ଼ିନଥିଲେ । କିଛି କିଛି ପଇସା ନେଇ ସେଠାକାର

ଶିକ୍ଷକମାନେ ପିଲାଙ୍କୁ ଟିକିଏ ଟିକିଏ ପାଠ ପଢ଼େଇ ଦେଉଥିଲେ । ତାହା ଅକ୍ଷର ଶିକ୍ଷା ଥିଲା କହିଲେ ଚଳେ ।

ମୁସ୍ତାରଦରଙ୍କର ପୁଅ ହେଲେ ବି ଲକ୍ଷ୍ମଣଙ୍କ ମନ୍‌ରେ ଟିକିଏ ଗର୍ବ ନଥିଲା । ସେ ପିଲାଦିନରୁ ଥିଲେ ଭଦ୍ର, ସରଳ ଓ ବିନୟୀ ।

## ଯୁବକ ଲକ୍ଷ୍ମଣ

ଲକ୍ଷ୍ମଣଙ୍କ ଚେହେରାଟି ଥିଲା ଖୁବ୍‌ସୁନ୍ଦର । ଦେଖିବାକୁ ସେ ଥିଲେ ଡେଙ୍ଗା । ଯୁବକ ସମୟରେ ଆଦିବାସୀ ଘରର ପୁଅ ଝିଅମାନେ ଗୀତ ଯୋଡ଼ି ବୋଲନ୍ତି । ଲକ୍ଷ୍ମଣ ବଣ ପାହାଡ଼ ପର୍ବତ ନଦୀ ଝରଣାକୁ ନେଇ ଗୀତ ଲେଖୁଥିଲେ । ଆଉ ବୋଲୁଥିଲେ । ସେତେବେଳେ ଆଦିବାସୀଜାତି ଭିତରେ ଛୁଆଁ ଅଛୁଆଁ ଭେଦଭାବ ଥିଲା । ବଡ଼ ଭୂମିଆମାନେ ସାନ ଭୂମିଆ ଘରେ ପାଣି ଛୁଇଁବେ ନାହିଁ । ଭୂମିଆମାନେ ଡମ୍ବ ଜାତିର ଲୋକଙ୍କ ଘରୁ ପାଣି ଛୁଇଁବେ ନାହିଁ । ଏସବୁ କଥା ଲକ୍ଷ୍ମଣଙ୍କୁ କେମିତି କେମିତି ଲାଗିଲା । ସେ ଏହାକୁ ବିରୋଧ କଲେ ।

ତାଙ୍କ ଗାଁ ପାଖରେ ଆଉ ଗୋଟିଏ ଗାଁ । ଗାଆଁର ନାମ ସାନଗୁମ୍ମା । ଘାସି ଭୂମିଆ ଏଇ ଗାଁର ଜଣେ ଲୋକ । ତାଙ୍କର ମଙ୍ଗୁଳି ବୋଲି ଥିଲା ଝିଅଟିଏ । ପଦଲାମ ନାୟକ ତାଙ୍କ ମଝିଆଁ ପୁଅ ଲକ୍ଷ୍ମଣଙ୍କୁ ଏଇ ଝିଅ ସହ ବାହା କରାଇଦେଲେ । ସେତେବେଳକୁ ଲକ୍ଷ୍ମଣଙ୍କୁ ଉଣେଇଶ ବର୍ଷ ବୟସ ହୋଇଥିଲା । ଭଗବାନଙ୍କର

ଅପୂର୍ବ ଯୋଗାଯୋଗ । ମଙ୍ଗୁଳି-ଲକ୍ଷ୍ମଣ ଦୁଇଜଣଙ୍କର ଯୋଡ଼ିର ମେଳ ଖୁବ୍ ବଢ଼ିଆ ଥିଲା । ବାହାଘରର ଦେଢ଼ବର୍ଷ ପରେ ଲକ୍ଷ୍ମଣଙ୍କର ପ୍ରଥମେ ପୁଅ ଜନ୍ମ ହୋଇଥିଲା । ସେ ତାର ନାଁ ରଖିଥିଲେ ରଘୁନାଥ । ବିବାହର ପାଞ୍ଚବର୍ଷପରେ ଝିଅଟିଏ ଜନ୍ମ ହୋଇଥିଲା । ସେ ତାର ନାଁ ଦେଇଥିଲେ କୌଶଲ୍ୟା । ଲକ୍ଷ୍ମଣଙ୍କ ପରିବାରଟି ଥିଲା ଛୋଟ ଓ ସୁଖୀ ପରିବାର ।

## ତରୁଣ ମନର ବିଦ୍ରୋହ

ସେତେବେଳେ ସମୟଥିଲା ଅନ୍ୟ ରକମର । ଶାସନ ଥିଲା ଇଂରେଜମାନଙ୍କ ହାତରେ । ଲକ୍ଷ୍ମଣ ନାୟକ ଦେଖିଲେ ସରକାରୀ କର୍ମଚାରୀମାନଙ୍କ ଯୋଗୁଁ ଲୋକେ ବଡ଼ ହଇରାଣ ହରକତ ହେଉଛନ୍ତି । ବେଠି ଖଟୁଛନ୍ତି । ସେହି ଅଞ୍ଚଳକୁ ମଝିରେ ଅମୀନ ଆସନ୍ତି । ରେଭେନ୍ୟୁ ଇନ୍‌ସ୍ପେକ୍‌ଟର ଆସନ୍ତି । ଏମାନଙ୍କୁ ଲୋକ 'ରିବିନି' ବୋଲି କହନ୍ତି । ଫରେଷ୍ଟ ଗାର୍ଡ଼ ଆସନ୍ତି । ତାଙ୍କୁ ଲୋକେ 'ଗାରଡ଼' ବୋଲି କହନ୍ତି । ବେଳେବେଳେ ପୋଲିସମାନେ ବି ଆସନ୍ତି । ଏହି ସରକାରୀ ହାକିମହୁକୁମାମାନେ ଆସିଲେ ମୁସ୍ତାଦାରଙ୍କ ଘରେ ରହନ୍ତି । ଖାଆନ୍ତି ପିଅନ୍ତି ।

ମୁସ୍ତାଦର ପଦଲାମ ନାୟକ ଏହି ହାକିମ ମାନଙ୍କୁ ସନ୍ତୁଷ୍ଟ କରନ୍ତି । ସେମାନଙ୍କର ଯେଉଁ ଜିନିଷ ଉପରେ ଆଖିପଡ଼େ ତାକୁ ଆଣି ଦିଅନ୍ତି । ନଦେଲେ ସେମାନଙ୍କର କୋପ କହିଲେ ନସରେ ।

ସେମାନେ ଲୋକଙ୍କୁ ଏଥିପାଇଁ କଠିନ ଦଣ୍ଡ ବି ଦିଅନ୍ତି । ସେହି ହାକିମମାନେ ଯାହା କହିବେ ସାଧାରଣ ଲୋକେ ମାନିବାକୁ ବାଧ । ଏମାନେ ଥିଲେ ଲୋକଙ୍କର ପ୍ରଭୁ ବା ଅଧିକାରୀ । ସେମାନେ ଯାହା କହିବେ ବା ଆଦେଶ ଦେବେ ଲୋକେ 'ଚିତମ୍ ମହାପ୍ରୁ' ବୋଲି କହିବାକୁ ବାଧ । ଯାହାର ଅର୍ଥ ହେଉଛି 'ଯେ ଆଜ୍ଞା ମହାପ୍ରୁ' । ପୁଣିଲୋକେ କହିବେ 'ଇଷ୍ଟ ମହାପ୍ରୁ' ଅର୍ଥ ଯାହା ତୋହର ଇଚ୍ଛା ମହାପ୍ରଭୁ ।

ପୁଣି ସେମାନେ ଗୋଟିଏ ଗାଁରୁ ଆଉ ଗୋଟିଏ ଗାଁକୁ ଯିବେ । ଯେଉଁ ଗାଁରେ ସେମାନେ ଥିବେ ସେହିଗାଁର ଲୋକେ ସେମାନଙ୍କର ସବାରି କାନ୍ଧେଇ ଅନ୍ୟ ଗାଁରେ ନେଇ ଛାଡ଼ିଦେଇ ଆସିବେ । ଯେଉଁଠାରେ ଅସୁବିଧା ହେବ ଲୋକେ ସେମାନଙ୍କୁ ଟେକିକରି ବା କାନ୍ଧରେ ବସାଇ ନେବେ । ଏସବୁ କଥା ଯୁବକ ଲକ୍ଷ୍ମଣ ନାୟକଙ୍କୁ ପସନ୍ଦ ହେଲାନି । ସେ ତାଙ୍କ ମନର ଅଶାନ୍ତି ବାପାଙ୍କ ଆଗରେ କେତେଥର କହିଲେ । ମାତ୍ର ବାପା ଲକ୍ଷ୍ମଣ କଥାକୁ ଏ କାନରେ ପୂରେଇ ସେ କାନରେ ବାହାର କରି ଦିଅନ୍ତି ।

ଦିନେ ଲକ୍ଷ୍ମଣ ବାପାଙ୍କୁ ମୁହାଁ ମୁହିଁ କହିଦେଲେ, - "ବାପା ସେମାନେ ସରକାରୀ ଚାକିରିଆ । ସେମାନେ ମଣିଷ । ସେମାନଙ୍କର ହାତଗୋଡ଼ ଅଛି, ହେଲେ ଲୋକେ ସେମାନଙ୍କୁ କିଆଁ ସବାରିରେ ବା ଟେକି କରିନେବେ । ଏଇଟା ବଡ଼ ଅନ୍ୟାୟ କଥା ।" ବାପା ବୁଝାଇକରି କହନ୍ତି, "ଏଇକଥା ପରା ବହୁଦିନରୁ

ଚଳିଆସୁଛି । ଆମେ ସେଥିପାଇଁ ଭାବିବା ଠିକ୍ ନୁହେଁ । ମୋ ଜାଗାରେ ଯିଏ ବି ମୁସ୍ତାଦାର ବା ନେତା ହେବ ସେ ବି ଏଇ କାମ ପାଇଁ ସେମାନଙ୍କୁ ସାହାଯ୍ୟ କରିବ । ଏ ହେଉଛି ପରମ୍ପରା ଲକ୍ଷ୍ମଣ ନାୟକ ବାପାଙ୍କ କଥା ଶୁଣି ମନେ ମନେ ରାଗିଯାଆନ୍ତି । ଆଉ କହନ୍ତି, "ଆମେ ଆଦିବାସୀହେଲୁ ବୋଲି କଣ ଆମର ମାନ ଇଜ୍ଜତ କିଛି ନାହିଁ ।"

ଏହି ଅନ୍ୟାୟ କଥା ବିରୁଦ୍ଧରେ ସଂଗ୍ରାମ ଚଳାଇବାକୁ ଲକ୍ଷ୍ମଣନାୟକ ମନବଳାଇଲେ । ସବୁ ଲୋକଙ୍କୁ ଏକାଠି କରିବାକୁ ସେ ଠିକ୍ କଲେ । ତାଙ୍କର ବହୁ ଆଗରୁ ମାଲକାନଗିରିରେ ହୋଇଥିବା କୋୟାମେଳି କଥା ତାଙ୍କ କାନରେ ବାଜିଲା । ସେକଥା ଶୁଣି ସେ ଉତ୍ତେଜିତ ହୋଇ ଉଠିଲେ । ସାଲିମ ଠାରୁ ଟିକିଏ ଦୂରରେ କୁରୁରକୋଣ୍ଡା ବୋଲି ଗାଁ ଟିଏ । ଏଇଗାଁରେ ରହୁଥିଲେ ଜଣେ କୋୟା ଜାତିର ଯୁବକ । ନାଁ ତାଙ୍କର ଚନ୍ଦ୍ରକୁଟିଆ । ଆଗରୁ ମାଲାକାନଗିରିର ରମ୍ପା ଅଞ୍ଚଳରେ କୋୟା ବିଦ୍ରୋହ ହୋଇଥିଲା । ଏହାକୁ 'ରମ୍ପାମେଳି' ବା 'ରମ୍ପାଫିତୁରୀ' ବୋଲି କୁହାଯାଉଥିଲା । ସେତେବେଳେ ଲକ୍ଷ୍ମଣ ନାୟକ ଥିଲେ କିଶୋର ।

ସେତେବେଳେ ଜଙ୍ଗଲ ଆଇନ ଥିଲା ବଡ଼ କଡ଼ା । ଫଳରେ ଆଦିବାସୀମାନେ ଦୁଃଖ ଭୋଗୁଥିଲେ । ଲୋକେ ବେଠି ଖଟୁଥିଲେ । ସେଠାରେ ଜଣେ ସାହେବ ତହସିଲଦାର ଥିଲେ । ତାଙ୍କ ନାଁ ଆଲଫ୍ରେଡ୍ ବେଇସନ । ସେ ଚାକିରି ସାଙ୍ଗକୁ ସେଠାରେ

ଠିକାଦାରୀ ମଧ୍ୟ କରୁଥିଲେ । ସେତେବେଳେ ମୂଲିଆ ମଜୁରି ଥିଲା ଛଅଅଣା ବା ୩୭ ପଇସା । ହେଲେ ସେ ସେଥିରୁ ଚାରିଅଣା କାଟିରଖି ବାକି ଦୁଇଅଣା ମୂଲିଆଙ୍କୁ ଦେଉଥିଲେ । ଫଳରେ କୋୟା ଜାତିର ଲୋକେ ବିଦ୍ରୋହ କଲେ । ଏହି ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ ଆଲୁରି ସୀତାରାମ ରାଜୁ । ଏହି ରମ୍ପାମେଳି ବା ରମ୍ପାଫିତୁରୀରେ ଚନ୍ଦ୍ରକୁଟିଆ ଯୋଗ ଦେଇଥିଲେ ।

ଚନ୍ଦ୍ରକୁଟିଆଙ୍କ ପାଖକୁ ଲକ୍ଷ୍ମଣନାୟକ ଯାଉଥିଲେ । ତାଙ୍କଠାରୁ ମେଳିର କଥା ଶୁଣୁଥିଲେ । ବନ୍ଧୁକ ଚାଳନା ବି ଶିକ୍ଷା କରୁଥିଲେ । କେମିତି ଲୋକେ ଗରିଲା ଯୁଦ୍ଧ କରୁଥିଲେ ତାହା ଜାଣିଲେ । ରମ୍ପାଫିତୁରୀ ଘଟଣାବଳୀକୁ ଲକ୍ଷ୍ମଣ ନାୟକ ମନକର୍ଣ୍ଣ ଦେଇ ଶୁଣୁଥିଲେ । ଏସବୁ କଥା ଶୁଣି ଲକ୍ଷ୍ମଣ ନାୟକ ନିଜ ଅଞ୍ଚଳରେ ମେଳିକରିବାକୁ ଚିନ୍ତାକଲେ ।

## ମୁସ୍ତାଦାର ଲକ୍ଷ୍ମଣ ନାୟକ

ଧୀରେ ଧୀରେ ଲକ୍ଷ୍ମଣନାୟକଙ୍କ ପିତା ପଦଲାମ ନାୟକ ଖୁବ୍ ବୁଢ଼ା ହୋଇଗଲେ । ମୁସ୍ତାଦାର କାମ ବୁଝିବା ପାଇଁ ତାଙ୍କୁ କଷ୍ଟ ହେଲା । ପଦଲାମ ନାୟକଙ୍କର ଇଚ୍ଛା ତାଙ୍କ ଅନ୍ତେ ବଡ଼ ପୁଅ ସନିଆ ମୁସ୍ତାଦାର ହେଉ । ହେଲେ ସନିଆ ସେ କାର୍ଯ୍ୟ କରିବା ପାଇଁ ଯୋଗ୍ୟ ନଥିଲା । ଫଳରେ ସଫା ସଫା ମନାକରି ଦେଲା । ତାପରେ ବୁଢ଼ାଙ୍କର ଲକ୍ଷ୍ମଣଙ୍କର ଉପରେ ନଜର ପଡ଼ିଲା । ସେ ତାଙ୍କୁ ଏଇ ପଦବୀ ପାଇଁ ଉପଯୁକ୍ତ ମନେକଲେ ।

୧୯୩୦ ମସିହାରେ ଲକ୍ଷ୍ମଣ ମୁସ୍ତାଦାର ହେଲେ । ବାପା ପଦଲାମ ନାୟକ ସେଥିରୁ ଅବସର ନେଲେ । ମୁସ୍ତାଦାର ହେବାର ଯୋଗ୍ୟତା ଲକ୍ଷ୍ମଣ ନାୟକଙ୍କ ଠାରେ ଥିଲା । ସେ ନିଜ ଗାଁ, ପାଖ ଗାଁର ନ୍ୟାୟ ନିଶାପ ଠିକ୍ ଭାବରେ କରୁଥିଲେ । ଲୋକେ ଅସୁସ୍ଥ ହେଲେ ଚେରମୂଳୀ ଔଷଧ ଦେଇ ସେମାନଙ୍କର ସେବା ଯତ୍ନ କରୁଥିଲେ । ସେ ସରକାରୀ ଅଫିସ୍ ବା କଚିରିରେ ଓଡ଼ିଆଭାଷା, ଗାଁ ଲୋକଙ୍କ ପାଖରେ ଦେଶୀୟା ଭାଷା ଆଉ କୋୟାଲୋକଙ୍କ ପାଖରେ କୋୟା ଭାଷା ଭଲକରି କହିପାରୁଥିଲେ । ଏଣୁ ସରକାରୀ କର୍ମଚାରୀ ଓ ସାଧାରଣ ଲୋକଙ୍କ ସହ ମିଶିବାକୁ ତାଙ୍କର କିଛି ଅସୁବିଧା ନଥିଲା ।

ମୁସ୍ତାଦାର ହେବାପରେ ସେ ଲୋକଙ୍କ ପାଇଁ କାମକଲେ । ନିଜ ଅଞ୍ଚଳରେ ରାସ୍ତାଘାଟମାନ କରାଇଲେ । ଲୋକଙ୍କୁ କାମଧନ୍ଦା ଯୋଗାଇଲେ । ଚାଷ ଜମିରୁ କେମିତି ଅଧିକ ଅମଳ ହୋଇ ପାରିବ ସେଥିପାଇଁ ଧ୍ୟାନଦେଲେ । ଆଦିବାସୀମାନଙ୍କର ନାଚଗୀତ ମେଳା ଆଦିକୁ ଭଲଭାବରେ ଆୟୋଜନ କରୁଥିଲେ । ତାଙ୍କଯୋଗୁଁ ଲୋକମାନଙ୍କ ଭିତରେ ଏକତା ବଢ଼ିଲା । ଲୋକେ ସବୁକାମରେ ଆଗୁଆ ହୋଇ ବାହାରିଲେ । ତାଙ୍କ ନିଜଗାଁ ସେତେବେଳେ ଗୋଟିଏ ଆଦର୍ଶ ଗାଁରେ ପରିଣତ ହୋଇଗଲା ।

ଲୋକେ ଲକ୍ଷ୍ମଣ ନାୟକଙ୍କର ପ୍ରଶଂସାକଲେ । ପାଖ ଅଞ୍ଚଳରେ ଲୋକେ ତାଙ୍କର ପରାମର୍ଶ ଲୋଡ଼ିଲେ । ହେଲେ ଲକ୍ଷ୍ମଣ

ନାୟକଙ୍କ ମନରେ ସେଇ ଗୋଟିଏ ଚିନ୍ତାଥିଲା । ରେଭେନ୍ୟୁ ଇନସ୍ପେକଟର, ଫରେଷ୍ଟ ଗାର୍ଡ଼ ଆସିଲେ ସେମାନଙ୍କ ସେବା କେମିତି ବନ୍ଦ କରାଯିବ । ଲୋକେ କେମିତି ବେଠି ନଖଟିବେ, ଆନନ୍ଦରେ ରହିବେ ଏସବୁ କଥା ଲକ୍ଷ୍ମଣ ନାୟକ ବେଶୀ ଭାବୁଥିଲେ । ତଥାପି ତାଙ୍କର ବିଶ୍ୱାସ ଥିଲା, ଏସବୁ କଥା ଦିନେ ରହିବ ନାହିଁ । ଦିନେ ନା ଦିନେ ଏହାର ଅବସାନ ହୋଇଯିବ ।

## କୋରାପୁଟରେ କଂଗ୍ରେସ ଆନ୍ଦୋଳନ

୧୯୨୯ ମସିହାକଥା । ସେତେବେଳେ ଗୋପବନ୍ଧୁ ଚୌଧୁରୀ କଂଗ୍ରେସ ଭାବାଧାରା ପ୍ରଚାରରେ ଲାଗିପଡ଼ି ଥାଆନ୍ତି । କୋରାପୁଟରେ ସ୍ୱାଧୀନତା ଆନ୍ଦୋଳନ ପଶିନଥାଏ । ଅସୁବିଧାରେ ପଡ଼ିଲେ କେଉଁଠି କେମିତି ଆଦିବାସୀମାନେ ମେଳି କରୁଥାଆନ୍ତି ସେତେବେଳେ କୋରାପୁଟର ରାଧାକୃଷ୍ଣ ବିଶ୍ୱାସ ରାୟ ସରକାରୀ ଚାକିରି କରୁଥିଲେ । ତାଙ୍କର ମନ ସ୍ୱାଧୀନତା ଆନ୍ଦୋଳନ ଆଡ଼କୁ ଢ଼ଳିଲା । ସେ ଗୋପବନ୍ଧୁ ଚୌଧୁରୀଙ୍କ ପାଖକୁ ପତ୍ର ଲେଖିଲେ । କିଛିଦିନପରେ ଗୋପବନ୍ଧୁ ଚୌଧୁରୀଙ୍କ ପରାମର୍ଶରେ ଚାକିରି ଛାଡ଼ିଲେ । ୧୯୩୦ ମସିହାରେ ହୋଇଥିବା ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ । ତାଙ୍କ ସାଙ୍ଗରେ କୋରାପୁଟର ବହୁ ସ୍ୱେଚ୍ଛାସେବୀ ମଧ୍ୟ ଯୋଗ ଦେଇଥିଲେ । ଏଥିପାଇଁ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ସହ ତାଙ୍କ ସହଯୋଗୀମାନେ କାରାବରଣ କରିଥିଲେ ।

ରାଧାକୃଷ୍ଣ ବିଶ୍ୱାସ ରାୟଙ୍କ ଯୋଗୁ ସ୍ୱାଧୀନତା ଆନ୍ଦୋଳନ କୋରାପୁଟରେ ପ୍ରବେଶ କଲା । ୧୯୩୦ ମସିହାରେ ଗୁଣୁପୁରର ଆଦିବାସୀମାନେ ମଧ୍ୟ ସରକାରୀ ଖଜଣା ବା ଟିକସ ନ ଦେବା ପାଇଁ ଆନ୍ଦୋଳନ କରିଥିଲେ । ଏହି ଆନ୍ଦୋଳନ ଭୀଷଣ ରୂପ ନେଇଥିଲା । ଫଳରେ ସରକାର ବର୍ଷକ ପାଇଁ କର ଉଠାଇ ଦେଇଥିଲେ । ଏହିପରି ଛୋଟ ଛୋଟ ଆଞ୍ଚଳିକ ଆନ୍ଦୋଳନମାନ ହିଁ କୋରାପୁଟରେ ଦେଖାଦେଇଥିଲା ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । କୋରାପୁଟ ଏହାର ଗୋଟିଏ ଜିଲ୍ଲାଭାବରେ ମାନ୍ୟତା ପାଇଲା । ସାର୍ ଜନ୍ ହବାକ୍ ଓଡ଼ିଶା ପ୍ରଥମ ଲାଟ ହୋଇ ଆସିଲେ । ସେ କୋରାପୁଟ ମାଳ ଅଞ୍ଚଳ ପରିଦର୍ଶନ କରିବାକୁ ଚାହିଁଲେ । ଏଖବର କୋରାପୁଟ ଅଞ୍ଚଳର ରାଜା ଜମିଦାର, ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ଚହଳପକେଇ ଦେଲା । ସେମାନେ ଲାଟ ସାହେବ ଓ ତାଙ୍କ ଲୋକମାନଙ୍କ ଖାଇବା ପିଇବା ଯୋଗାଡ଼ରେ ଲାଗି ପଡ଼ିଲେ । ବେଠିଆମାନେ ଗାଁ ଗାଁ ବୁଲି କାଠ, ଚାଉଳ, ମାଂସ, ଟଙ୍କା ପଇସା ଆଦି ସଂଗ୍ରହରେ ଲାଗି ପଡ଼ିଲେ । ଲାଟ୍ ସାହେବଙ୍କର ଏହି ସରକାରୀ ଗସ୍ତପାଇଁ ରାମଗିରି ଅଞ୍ଚଳରେ ଲୋକେ ବିଶେଷ କଷ୍ଟ ପାଇଲେ । ଲୋକମାନଙ୍କ ଘରୁ ଚାଉଳ, କାଠ ଗଲା । ବାରିରୁ ପରିବା ଗଲା । ଦୁଧିଆଳ ଗାଈଗୋରୁ ମାନେ ବନ୍ଧା ହୋଇ ଚାଲିଗଲେ । ଲୋକଙ୍କ ଭାଡ଼ିରୁ କୁକୁଡ଼ା ଜୋର ଜବରଦସ୍ତ ନିଆଗଲା ।

ଲୋକେ ଯାହାସବୁ ସଞ୍ଚୟକରି ରଖିଥିଲେ ତାହା ସବୁ ଚାଲିଗଲା । ଲୋକଙ୍କ ଦୁଃଖ କହିଲେ ନ ସରେ । ଲକ୍ଷ୍ମଣ ନାୟକ ଲୋକଙ୍କ ଦୁଃଖ ଦେଖି ହତବାକ୍ ହୋଇ ଗଲେ । ଘୁମର ବୋଲି ଗାଁଟିଏ । ସେଇଠି ଜଣେ ଲୋକ୍‌ରହୁଥିଲେ । ତାଙ୍କ ନାଁ ନୀଳକଣ୍ଠ ପାତ୍ର । ସେ ଲକ୍ଷ୍ମଣ ନାୟକଙ୍କର ଜଣେ ଘନିଷ୍ଠ ବନ୍ଧୁ । ବିଚରା ଲକ୍ଷ୍ମଣ ନାୟକ ଯାଇ ନୀଳକଣ୍ଠଙ୍କୁ ଲୋକଙ୍କ ଦୁଃଖ କଥାମାନ କହିଲେ ।

ନୀଳକଣ୍ଠ ପାତ୍ରେ ଏକଥା ଜଣାଇବାକୁ ଗଲେ ଜୟପୁର । ସେଠାରେ ରାଧାକୃଷ୍ଣ ବିଶ୍ୱାସ ରାୟଙ୍କୁ ଭେଟିଲେ । ଏହି ସବୁ ଘଟଣାକୁ ଠିକ୍ ଭାବରେ ବନେଇ ଚୂନେଇ ଲେଖାଗଲା । ତାହା ପଠାଗଲା ସମାଜ ପତ୍ରିକାକୁ । ସେଥିରେ ପ୍ରକାଶ ପାଇଲା । ସାରା ଓଡ଼ିଶାରେ ଲୋକେ ପଢ଼ିଲେ । ଲୋକଙ୍କ ଭିତରେ ଗୁଞ୍ଜରଣ ଦେଖାଦେଲା । ସରକାରଙ୍କ ଆଖିରେ ବି ଏଖବର ପଡ଼ିଲା । ସରକାର ଆଦେଶ କଲେ, ଲାଟସାହେବଙ୍କ ଗସ୍ତ ପାଇଁ ଯାହା ଯାହା କ୍ଷତି ଘଟିଛି ସେଥିପାଇଁ ଶୀଘ୍ର କ୍ଷତିପୂରଣ ଦିଆଯିବ । ଲୋକେ କ୍ଷତିପୂରଣ ପାଇଲେ । ଏହାଥିଲା ଅନ୍ୟାୟ ବିରୁଦ୍ଧରେ ଲକ୍ଷ୍ମଣ ନାୟକଙ୍କର ପ୍ରଥମ ବିଜୟ ।

## କଂଗ୍ରେସରେ ଯୋଗଦାନ

ଲୋକଙ୍କ ମଧ୍ୟରେ ଏକତା ବଢ଼ିଲା । ଆଦିବାସୀ ଲୋକେ କଂଗ୍ରେସ ପ୍ରତି ଆକୃଷ୍ଟହେଲେ । ତାପରେ ନୀଳକଣ୍ଠ ପାତ୍ରଙ୍କ ଘରେ

ଘୁମର ଠାରେ କଂଗ୍ରେସ ନେତାମାନଙ୍କର ଗୋଟିଏ ସଭା ବସିଲା। ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧା ମୋହନ ସାହୁ ଏଥିରେ ଯୋଗ ଦେଲେ। ବିଭିନ୍ନ ଗାଁର ମୁଖିଆ ଓ ବିଭିନ୍ନ ଅଞ୍ଚଳର ମୁସ୍ତାଦାର ମାନେ ଏହି ସଭାକୁ ଆସିଲେ। ଲକ୍ଷ୍ମଣ ନାୟକ ବି ଏହି ସଭାରେ ଯୋଗ ଦେଲେ। ଏହି ସଭାରେ ବ୍ରିଟିଶ ସରକାରର୍ ଅତ୍ୟାଚାର କଥା ଆଲୋଚନା ହେଲା। ମହାତ୍ମା ଗାନ୍ଧିଙ୍କ ହାତମୁଠା ଟାଣ କରିବା ପାଇଁ ସେମାନେ ଶପଥନେଲେ। ଯେତେ ଲୋକ ସେଦିନ ଉପସ୍ଥିତ ଥିଲେ ସମସ୍ତେ କଂଗ୍ରେସ ସଭ୍ୟହେଲେ। ଲକ୍ଷ୍ମଣ ନାୟକ ମଧ କଂଗ୍ରେସର ଚାରଣିଆ ପ୍ରାଥମିକ ସଭ୍ୟ ହେଲେ। ଏହାପରେ ଲକ୍ଷ୍ମଣ ନାୟକଙ୍କ ଜୀବନ ନୂଆମୋଡ଼ ନେଲା।

ଅଳ୍ପ ଦିନ ଭିତରେ ମାଲକାନାଗିରି ଓ କୋରାପୁଟ ଆଦି ଅଞ୍ଚଳରେ କଂଗ୍ରେସକୁ ଲୋକେ ଖୁବ୍ ଭଲ ପାଇ ବସିଲେ। କଂଗ୍ରେସରେ କାର୍ଯ୍ୟରେ ଲକ୍ଷ୍ମଣ ନାୟକ ବହୁତ ସମୟ ଦେଲେ। କଂଗ୍ରେସର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ। ସେ ହେଲେ ତେନ୍ତୁଳିଗୁମ୍ମା କଂଗ୍ରେସ କମିଟିର ସଭାପତି। ଆଉ କୋରାପୁଟ ଜିଲ୍ଲା କଂଗ୍ରେସ କମିଟିର ଜଣେ ସକ୍ରିୟ ସଭ୍ୟ। ୧୯୩୬ ମସିହାରେ ମାତିଲି ହାଟଠାରେ ଗୋଟିଏ ସଭାବସିଲା। ଅନ୍ୟାୟ କର ନ ଦେବା ପାଇଁ ଲକ୍ଷ୍ମଣ ନାୟକ ଆନ୍ଦୋଳନ କଲେ। ସେଥିପାଇଁ ସେ ପ୍ରଥମଥର ପାଇଁ ଗିରଫ ହେଲେ। ୧୯୩୭ ମସିହାରେ ରାଜ୍ୟରେ ନିର୍ବାଚନ ହେଲା। ଜିଲ୍ଲାର ତିନିଜଣ ଯାକ

ପ୍ରାର୍ଥୀ ଯଥା, ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ବିଜୟୀ ହେଲେ । ଅନ୍ୟମାନେ ନିର୍ବାଚନରେ ହାରିଗଲେ । ଏପରିକି ଜୟପୁର ରଜାଙ୍କର ଭାଇ ବିଦ୍ୟାଧର ସିଂହ ଦେଓ, ରାଜାଙ୍କ ଓକିଲ ବାଳକୃଷ୍ଣ ପାତ୍ର ଓ ହରିହର ମିଶ୍ର ଆଦି ପରାଜିତ ହେଲେ ।

ତାପରେ କୋରାପୁଟରେ କଂଗ୍ରେସ ତାଲିମ ଶିବିରମାନ ଆରମ୍ଭହେଲା । ଓଡ଼ିଶାର ବଡ଼ ବଡ଼ କଂଗ୍ରେସ ନେତା ସେଠାରେ ଯାଇ ଏହି ତାଲିମ କାର୍ଯ୍ୟକ୍ରମ କଲେ । ସେମାନଙ୍କ ଭିତରେ ଥିଲେ ଗୋପବନ୍ଧୁ ଚୌଧୁରୀ, ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଓ ଗୋକୁଳାନନ୍ଦ ମହାନ୍ତି । ଏଥିରେ ୩୫୦ ଜଣ ଆଦିବାସୀ ହରିଜନମାନଙ୍କୁ ଖଦି ତଥା ଅନ୍ୟ ବିଷୟରେ ତାଲିମ ଦିଆଗଲା । ଲକ୍ଷ୍ମଣ ନାୟକ ମଧ ଏହି ଶିବିରରେ ତାଲିମ ପାଇଥିଲେ । ତାଲିମରୁ ଫେରି ଲକ୍ଷ୍ମଣ ନାୟକ ପୂରାପୂରି ଗାନ୍ଧିଙ୍କ ଅହିଂସା ବାଣୀରେ ବିଶ୍ୱାସ ରଖିଲେ । ତା'ପରଠାରୁ ସେ ଶିକାର ଛାଡ଼ିଦେଲେ । ଆମିଷ ବି ଖାଇଲେ ନାହିଁ । ନିରାମିଷ ଭୋଜନ କଲେ । ଗାଁ ଗଣ୍ଡାରେ ଠାକୁରାଣୀ ପାଖରେ ପଡୁଥିବା ବଳି ପ୍ରଥା ବି ବନ୍ଦ ହୋଇଗଲା । ଏଥିପାଇଁ ଲକ୍ଷ୍ମଣ ନାୟକଙ୍କ ଉଦ୍ୟମ ପ୍ରଶଂସନୀୟ ।

ଲକ୍ଷ୍ମଣ ନାୟକ ନିଜ ଗାଁ କୁ କଂଗ୍ରେସ ନୀତିରେ ପୂରାପୂରି ଚଳାଇଲେ । ଘରେ ତ୍ରିରଙ୍ଗ ପତାକା ଓ ଗାନ୍ଧିଜୀଙ୍କ ଫଟୋ ରଖି

ପୂଚ୍ଛା କଲେ । ସକାଳେ ନିଜ ଗାଁର କଂଗ୍ରେସ କର୍ମୀଙ୍କୁ ଏକାଠି କରି ରାମଧୁନ ବୋଲନ୍ତି । ତାପରେ ଭାତଗଣ୍ଡିଏ, ତେନ୍ତୁଳି ଟିକିଏ ଲୁଣଲଙ୍କା ସହ ଖାଇ ଦିଅନ୍ତି । ସେତେବେଳେ କଂଗ୍ରେସ କର୍ମୀମାନେ ଖୁବ୍ ଅଳ୍ପ ଅଳ୍ପ ଖାଇବା ଅଭ୍ୟାସ କରୁଥିଲେ । କାରଣ ଜେଲରେ ରହିଲେ ଭଲ ଖାଇବାକୁ ମିଳିବ ନାହିଁ । ଏଣୁ ସେମାନେ ଏପରି ଅଭ୍ୟାସ କରିଥାଆନ୍ତି । ମୁସ୍ତାଦାର ହିସାବରେ ତାଙ୍କ ଅଞ୍ଚଳର ଲୋକେ ତାଙ୍କୁ ସବୁଦିନ ଭେଟିବାକୁ ଆସନ୍ତି । ଅନ୍ୟ ଅଞ୍ଚଳର ଲୋକମାନେ ମଧ୍ୟ ତାଙ୍କୁ ଭେଟିବାକୁ ଆସୁଥିଲେ । ଲକ୍ଷ୍ମଣ ନାୟକ କଂଗ୍ରେସ ଚାନ୍ଦା ଆଦାୟ କରିବାକୁ ଗାଁ କୁ ଗାଁ ନିଜ ଲୋକମାନଙ୍କୁ ପଠାନ୍ତି ।

କଂଗ୍ରେସ ଅଫିସରୁ ଯେଉଁ ଲେଖା ବା ଚିଠି ଆସେ ତା'ର ଉତ୍ତର ଲକ୍ଷ୍ମଣ ନାୟକ ଦିଅନ୍ତି । ଏଥିରେ ତାଙ୍କୁ ବଳରାମ ପୂଜାରୀ ବୋଲି ଜଣେ ଲୋକ ସାହାଯ୍ୟ କରୁଥିଲେ । ଏହା ବ୍ୟତୀତ ଲକ୍ଷ୍ମଣ ନାୟକଙ୍କର ଆଉ ଦୁଇଜଣ ସହଯୋଗୀ ଥିଲେ । ସେମାନେ ହେଲେ ବନସିଂ ପୂଜାରୀ ଓ ମୋତିରାମ ସିଂହ । ଲକ୍ଷ୍ମଣ ନାୟକ ଗାଁ ଗାଁ ବୁଲନ୍ତି । ଲୋକଙ୍କୁ ଭେଟନ୍ତି । ତାଙ୍କ ସ୍ତ୍ରୀ ମଙ୍ଗୁଳି କୁଆଡ଼େ ଯାଉଛ ବୋଲି ପଚାରିଲେ ସେ କୁହନ୍ତି, "ଯାଉଛି ରାଇଜ ଆଣିବାକୁ ।"

ସେ ଗାଁ ଗାଁ ବୁଲନ୍ତି । ପାହାଡ଼ ପର୍ବତ ଡେଇଁ ବହୁତ ଦୂରକୁ ଚାଲିଯାଅନ୍ତି । କେଉଁଦିନ ଘରକୁ ଫେରି ଆସନ୍ତିତ ଆଉ

କେଉଁଦିନ ଆସି ପାରନ୍ତି ନାହିଁ । ଯେଉଁଠି ସନ୍ଧ୍ୟା ହୋଇଯାଏ ସେଠାରେ ରହି ଯାଆନ୍ତି । ସାଙ୍ଗରେ ଥାଏ ଖଣ୍ଡିଏ ବ୍ୟାଗ, ସେଇ ବ୍ୟାଗ ଭିତରେ ଥାଏ ଖଣ୍ଡିଏ ତିନି ରଙ୍ଗିଆ କଂଗ୍ରେସୀ ପତାକା, ଗୋଟିଏ କଲମ, କଂଗ୍ରେସ ଚାନ୍ଦା ପାଇଁ ରସିଦବହି, ଆଉ ଖଣ୍ଡିଏ ଗାମୁଛା । ସେ ଯେଉଁ ଗାଁକୁ ଯାଉଥିଲେ ଲୋକେ ତାଙ୍କୁ ସେଠି ଘେରି ଯାଉଥିଲେ । ଲୋକେ ନିଜ ହାରି ଗୁହାରି ଦୁଃଖସୁଖ ଜଣାନ୍ତି । ଔଷଧ ମାଗନ୍ତି । ଚେରମୂଳୀ ମାଗନ୍ତି । କଂଗ୍ରେସରେ କେମିତି ମିଶିବାକୁ ହେବ ସେକଥା ବୁଝନ୍ତି । ଲକ୍ଷ୍ମଣ ନାୟକ ସମସ୍ତଙ୍କ କଥାର ସମାଧାନ କରନ୍ତି । କଅଁଳ ବଚନ କହି ସମସ୍ତଙ୍କ ମନ ମୋହି ଦିଅନ୍ତି ।

ଲୋକମାନଙ୍କ ମେଳରେ ବସି ଲୋକଙ୍କୁ ଗାନ୍ଧିଙ୍କ କଥା କହନ୍ତି । ରାଜା ମହାରାଜାର ଲୋକ, ଆର.ଆଇ.ର ଆଉ ଗାର୍ଡ଼ମାନଙ୍କର ଅତ୍ୟାଚାର କଥା କହନ୍ତି । କୁହନ୍ତି, ସେମାନେ ଆମକୁ କାହିଁକି ବେଠି ଖଟାଇବେ । ଆମେ ତାଙ୍କୁ କର ଦେବା ନାହିଁ । ଆମେ ତାଙ୍କ ବୋଲ ମାନିବା ନାହିଁ । ଆମେ ସେମାନଙ୍କର ସେବା କରିବା ନାହିଁ । ସରକାର କର ମାଗିଲେ ଆମେ ଦେବାନାହିଁ । ଏକଥା ମୁଁ କହୁନି, ଏକଥା କହୁଛନ୍ତି ଗାନ୍ଧି ମହାତ୍ମା । ଆମଦେଶକୁ ଆମେ ରକ୍ଷାକରିବା । ଆମ ନିଜକୁ ଆମେ ରକ୍ଷାକରିବା ।

ଦିନକୁ ଦିନ କୋରପୁଟ ଜିଲ୍ଲାର କଂଗ୍ରେସ କର୍ମୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା । କଂଗ୍ରେସ ଅଫିସମାନଙ୍କରେ ଗାନ୍ଧିଙ୍କ ଫଟୋକୁ ଦେବତା ଭଳି ପୂଜା କରାଗଲା । ୧୯୩୮ରେ ଲୋକମାନଙ୍କ ଭିତରେ ପ୍ରଚାର ହୋଇଗଲା ଯେ ଗାନ୍ଧି ମହାତ୍ମା କୋରାପୁଟ ଜିଲ୍ଲାକୁ ଆସିବେ । ଲୋକଙ୍କ ମନରେ ଆନନ୍ଦ କହିଲେ ନସରେ । କଂଗ୍ରେସ ସଭ୍ୟଙ୍କ ସଂଖ୍ୟା ଦିନକୁ ଦିନ ବଢ଼ିଲା । ବଢ଼ି ବଢ଼ି ପଚାଶ ହଜାରରେ ଆସି ପହଞ୍ଚିଲା ।

ଲକ୍ଷ୍ମଣ ନାୟକଙ୍କ ଯୋଗୁଁ ମାଲକାନାଗିରି ଅଞ୍ଚଳରେ ଆନ୍ଦୋଳନ ମୁଣ୍ଡ ଟେକିଲା । ଦିନକୁ ଦିନ ଆନ୍ଦୋଳନ ବଢ଼ିଲା ସିନା କମିଲା ନାହିଁ । ସେ ମୁସ୍ତାଦାର ଥାଇ ମଧ୍ୟ ନିଜ ଲୋକଙ୍କୁ କର ନ ଦେବା ପାଇଁ କହିଲେ । ସରକାରୀ ଅଫିସରମାନେ ତାଙ୍କ ନାଁରେ ରାଜାଙ୍କ ପାଖରେ ଆପତ୍ତି କଲେ । ଫଳରେ ତାଙ୍କୁ ରାଜସରକାର ମେଳି ସର୍ଦ୍ଦାର ଓ ରାଜଦ୍ରୋହୀ ବୋଲି ଘୋଷଣା କଲେ । ତାଙ୍କ ମୁସ୍ତାଦାର ପଦ ଚାଲିଗଲା । ହେଲେ ବି ସେ ନିଜର ଲକ୍ଷ୍ୟ ପଥରେ ଅଟଳ ରହିଲେ । ରାମାୟଣର ଲକ୍ଷ୍ମଣ ପରି ସେ ଦୃଢ଼ ପ୍ରତିଜ୍ଞ ହୋଇ ରହିଲେ । ମୁସ୍ତାଦର ପଦ ଚାଲିଗଲେ ମଧ୍ୟ ସେଥିପାଇଁ ସେ ତିଳେହେଲେ ଦୁଃଖ କରି ନ ଥିଲେ ।

ଅନ୍ୟାୟର ଅବସାନ ପାଇଁ ସେ ଆଗକୁ ଚାଲି ଆସିଲେ । ମିଶିଲେ ଲୋକଙ୍କ ସଙ୍ଗରେ । ଅନ୍ୟମାନେ ଚାଲିଲେ ତାଙ୍କ

ପଛରେ । ଲୋକେ ତାଙ୍କୁ ମାଲକାନାଗିରିର ଗାନ୍ଧି ବୋଲି ସମ୍ବୋଧନ କଲେ ।

## ବିପ୍ଳବୀ ଲକ୍ଷ୍ମଣ ନାୟକ

୧୯୪୨ ମସିହା । ଭାରତଛାଡ଼ ଆନ୍ଦୋଳନର ଡାକରାରେ ଭାରତ ପଡୁଛି ଉଠୁଛି । ଲୋକ ଗାନ୍ଧିଙ୍କର 'କର ବା ମର' ନୀତିରେ ପରିଚାଳିତ । ଚାରିଆଡ଼େ ଆନ୍ଦୋଳନ ତେଜି ଉଠିଲା । ସେତେବେଳେ ଲକ୍ଷ୍ମଣ ନାୟକଙ୍କ ଦ୍ୱାରା ତେନ୍ତୁଳିଗୁମ୍ମା ଗ୍ରାମରୁ ଦୁଇଶହ ଲୋକ କଂଗ୍ରେସ କର୍ମୀ ଭାବରେ ଯୋଗଦେଇଥିଲେ । ପାଖଗାଁ ଉଦୟଗିରି ପଣ୍ଡାଗୁଡ଼ା ଓ ତେନ୍ତୁଳିଗୁମ୍ମା ଗ୍ରାମରେ ଆଶ୍ରମ ଖୋଲାଯାଇ ଆନ୍ଦୋଳନ ଚାଲୁ ରହିଲା । ସେ ୧୯୪୦-୪୧ ମସିହାରେ ତାଙ୍କର ଅଞ୍ଚଳର ସାତଜଣ ସ୍ଥାନୀୟ ଗ୍ରାମବାସୀଙ୍କ ସହ ଦୁଇଥର ବ୍ୟକ୍ତିଗତ ସତ୍ୟାଗ୍ରହ କରିଥିଲେ । ଥରେ ଜୟପୁର ରାମଗିରି ଫାଣ୍ଡି ଅଞ୍ଚଳରେ, ଆଉଥରେ ମାଡ଼ିଲି ପୋଲିସ ଷ୍ଟେସନ ଇଲାକରେ । ଏଥିପାଇଁ ସେ ନଅ ମାସ ସଶ୍ରମ କାରାଦଣ୍ଡ ଭୋଗିଥିଲେ । ୩୦୦ ଟଙ୍କା ଜରିମନା ମଧ୍ୟ ଦେଇଥିଲେ ।

ଏଥିପାଇଁ କୋରାପୁଟ ଜିଲ୍ଲାର କେଉଁଠି କିଏ ବ୍ୟକ୍ତିଗତ ଭାବରେ ଆଇନ ଅମାନ୍ୟ କରିବେ ସେଥିପାଇଁ ଆଗରୁ ଠିକ୍ ହୋଇଥିଲା । ମାଡିଲି ଅଞ୍ଚଳ ପାଇଁ ଲକ୍ଷ୍ମଣ ନାୟକଙ୍କୁ ମନୋନୀତ କରାଯାଇଥିଲା । ଲକ୍ଷ୍ମଣ ନାୟକଙ୍କୁ ସରକାରୀ କର୍ମଚାରୀମାନେ

ଭୟ କଲେ । ଲକ୍ଷ୍ମଣ ନାୟକ ସେମାନଙ୍କ ପାଇଁ ଗୋଟିଏ ଆତଙ୍କ ବୋଲି ସେମାନେ ଭାବିଲେ । ଫଳରେ ତାଙ୍କ ନାମରେ ମିଥ୍ୟା ଅଭିଯୋଗମାନ କଲେ । ଗାଁର ଟାଉଟରିଆ ମୁଖିଆମାନଙ୍କୁ ଲକ୍ଷ୍ମଣଙ୍କ ବିରୁଦ୍ଧରେ ଲଗେଇ ଦେଲେ । ହେଲେ ଲକ୍ଷ୍ମଣ ନାୟକ ଖୁବ୍ ଲୋକପ୍ରିୟ ଥିବାରୁ ତାଙ୍କର କୌଣସି ଅସୁବିଧା ହେଲା ନାହିଁ ।

୧୯୪୨ ମସିହା ଜୁଲାଇ ମାସ ୩୧ ତାରିଖରେ ଜୟପୁର ଠାରେ କୋରାପୁଟ ଜିଲ୍ଲାର କଂଗ୍ରେସ କମିଟିର ସଭାବସିଲା । ଲକ୍ଷ୍ମଣ ନାୟକ ଏହି ସଭାରେ ଯୋଗ ଦେଇଥିଲେ । ବମ୍ବେ କଂଗ୍ରେସ ଅଧିବେଶନରେ ଯୋଗ ଦେବା ପାଇଁ ରାଧାକୃଷ୍ଣ ବିଶ୍ୱାସରାୟ ଯାଇଥିଲେ । ଏଠାରେ ବହୁତ କଂଗ୍ରେସ କର୍ମୀ ଗିରଫ ହେଲେ । ଅନ୍ୟ କେତେଜଣ ଲୁଚିଛପି ଚାଲିଆସିଲେ । ରାଧାକୃଷ୍ଣ ବିଶ୍ୱାସର ରାୟ ଲୁଚିକରି ଚାଲି ଆସି ଥିବାବେଳେ ବାଟରେ ଗିରଫ ହେଲେ । କୋରାପୁଟ ଜେଲରେ ରହିଲେ । ତାପରେ ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ଗିରଫ ହୋଇ ଜେଲରେ ରହିଲେ । କୋରାପୁଟର ସୁପରିଚିତ କଂଗ୍ରେସ ନେତାମାନେ ଗିରଫ ହେବାରୁ ଚାରିଆଡ଼େ ନିଆଁ ଜଳିଉଠିଲା ।

ଅଗଷ୍ଟ ବିପ୍ଳବର ପ୍ରଚାରପତ୍ର ସବୁ ଅଞ୍ଚଳକୁ ପଠାଇ ଦିଆ ଯାଉଥିଲା । କୋରାପୁଟକୁ ମଧ୍ୟ ସେସବୁ ଆସିଲା । କୋରାପୁଟର କଂଗ୍ରେସ କର୍ମୀମାନେ ଗାଁ ଗାଁ ବୁଲି ସେହି ପ୍ରଚାର ପତ୍ରର

ବିଷୟ ଲୋକଙ୍କୁ ବୁଝାଇଲେ। ଏହାଫଳରେ କୋରାପୁଟ କୁ ସ୍ୱାଧୀନ କରିବା ପାଇଁ ଲୋକେ ଦାବି କଲେ। ଚାରିଆଡ଼େ ହରତାଳ ହେଲା। ହାଟ ବଜାରକୁ ଲୋକେ ବନ୍ଦ କରିଦେଲେ। ଲୋକେ ସରକାରୀ ଘର, ଡାକଘରକୁ ଭଙ୍ଗାରୁଜା, ପୋଡ଼ାଜଳା ଓ ଲୁଟତରାଜ କଲେ।

୧୯୪୨ ଅଗଷ୍ଟ ୧୩ ତାରିଖରେ ଜୟପୁରର ଗୋଟିଏ ସଭା ହେଲା। ଦୁଇଜଣ ଯୁବକ ହାତରେ କଂଗ୍ରେସ ପତାକା ଧରି ଗାନ୍ଧିଜୀଙ୍କର ବାର୍ତ୍ତା ପାଠ କଲେ। ଲୋକେ ଉତ୍ତେଜିତ ହୋଇ ଉଠିଲେ। ଏହିସଭା ଆଗରୁ ଅଗଷ୍ଟ ୧୨ ତାରିଖ ଦିନ କୋରାପୁଟର ସବୁ ବଡ଼ ବଡ଼ କଂଗ୍ରେସନେତାଙ୍କୁ ଗିରଫ କରା-ଯାଇଥିଲା। ହେଲେ ଲକ୍ଷ୍ମଣ ନାୟକ ରହି ଯାଇଥିଲେ। ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀଙ୍କ ସମେତ ଦୁଇଶହ ଲୋକ ଗାଁ ଗାଁ ବୁଲିଲେ। କାନ୍ଧରେ ଝୁଲାମୁଣି, ହାତରେ କଂଗ୍ରେସ ପତାକା। ସେମାନେ ଲୋକମାନଙ୍କୁ ବୁଝାଇଲେ, ଗାନ୍ଧି ମହାତ୍ମା ଛାଡ଼ ନ ପାଇଲା ଯାଏ ସେମାନେ ଆନ୍ଦୋଳନ ଚାଲୁ ରଖିବେ।

ଜୟପୁର ତାଲୁକ ଅଫିସ ଘେରାଉହେଲା। କେତେକ କର୍ମୀ ଗିରିଫହେଲେ। ଲୋକେ କ୍ରମେ ଅଧିକ ଉତ୍ତ୍ୟକ୍ତ ହୋଇ ଉଠିଲେ। ପୋଲିସ ସହ ଲୋକଙ୍କର ମୁହାଁ ମୁହିଁ ସଂଘର୍ଷ ହେଲା। ଘମାଘୋଟ ଲଢ଼େଇ ଚାଲିଲା। ଲୋକେ ପୋଲିସ୍‌ଙ୍କୁ ଖାତିର କଲେ ନାହିଁ। ପୋଲିସ ଏଥିପାଇଁ ବିଳଚିତ ହୋଇ ଉଠିଲେ।

ପୋଲିସ ଲକ୍ଷ୍ମଣ ନାୟକଙ୍କୁ ଗିରିଫ କରିବା ପାଇଁ ଚାରିଆଡ଼େ ଖୋଜିଲେ । ଜୟପୁର ଛାଡ଼ି ଚାଲିଯିବାପାଇଁ କର୍ମୀମାନେ ଲକ୍ଷ୍ମଣନାୟକଙ୍କୁ ପରାମର୍ଶ ଦେଲେ । ଲକ୍ଷ୍ମଣ ନାୟକ ଲୁଚିକରି ଜୟପୁର ଛାଡ଼ି ବଣ ପାହାଡ଼ ଦେଇ ଯାଇ ଘୁମରଠାରେ ପହଞ୍ଚିଲେ । ସେହି ଅଗଷ୍ଟ ୧୬ ତାରିଖ ରାତିରେ ଗୋଟିଏ ଘଟଣା ଘଟିଲା । କଂଗ୍ରେସ କର୍ମୀମାନେ ବଢ଼ିଗର ଠାରେ ଅଫିମ ଦୋକାନକୁ ଘେରାଉ କଲେ । ପାଖରେ ଥିବା ସବୁ ଅଫିମକୁ ସେମାନଙ୍କୁ ଦେଇଦେବାକୁ ଲୋକେ ଭେଣ୍ଡର ସଦାଶିବ ଚୌଧୁରୀଙ୍କୁ କହିଲେ । କର୍ମୀମାନେ ଥିଲେ ମାତିଲି ଓ ଗଡୁଆ ଅଞ୍ଚଳର ଲୋକ । ସେମାନେ ହାତରେ ଧରିଥିଲେ କଂଗ୍ରେସ ପତାକା । ଆଉ ଖଣ୍ଡିଏ ଖଣ୍ଡିଏ ଲାଠି । ଭୟରେ ସଦାଶିବ ଚୌଧୁରୀ ନିକିତି ବଟକରା ଓ ପାଖରେ ଥିବା ସବୁ ଅଫିମକୁ ଲୋକଙ୍କ ହାତରେ ଦେଇଦେଲେ ।

ଲକ୍ଷ୍ମଣ ନାୟକ ଅଗଷ୍ଟ ୧୭ ତାରିଖଦିନ କଂଗ୍ରେସ କର୍ମୀଙ୍କ ସହାୟତାରେ କୋଣ୍ଡାବେଡ଼ା ମଦ ଦୋକାନ ଉପରେ ଚଢ଼ାଉ କଲେ । ତାପରେ ଚାଲିଲେ କୁଣ୍ଡିପାଲ୍ଲୀ । ସେଠାରେ ମଦ ଦୋକାନ ଉପରେ ଚଢ଼ାଉ କଲେ । ତାପରେ ଚାଲିଲେ ସାଲିମି । ସେଠାରେ ପହଞ୍ଚି ଚନ୍ଦ୍ରଶେଖର ପଟ୍ଟନାୟକଙ୍କ ଅଫିମ ଦୋକାନ ଉପରେ ଚଢ଼ାଉ କଲେ । ସେତେବେଳେ ମାଲକାନାଗିରି ଅଞ୍ଚଳରେ ମୋତି ସିଂ ବୋଲି ଜଣେ କଂଗ୍ରେସ କର୍ମୀଥିଲେ । ସେ ଥିଲେ ସେହି ଅଞ୍ଚଳର ଲାଲ ରାଜା । ଲକ୍ଷ୍ମଣ ନାୟକ ଓ ବଳରାମ

ପୂଜାରୀ ଅଗଷ୍ଟ ଉଣେଇଶ ତାରିଖ ଦିନ ଲାଲା ରାଜାଙ୍କୁ ଭେଟିଲେ । ଲାଲରାଜାଙ୍କୁ ସଙ୍ଗରେ ଧରି ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀ ମାଲକାନା ଗିରିର ପୁଣାପାଲ୍ଲୀ ଗାଁକୁ ଗଲେ । ସେଠାରେ ସେମାନେ ମଦଦୋକାନ ଉପରେ ଚଢ଼ାଉ କରି ଭଙ୍ଗାରୁଜା କଲେ । ବହୁତ କ୍ଷୟକ୍ଷତି ହେଲା । ଏହିପରି ଭାବରେ ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ସାରା ମାଲିକାନାଗିରି ଅଞ୍ଚଳରେ ମଦ ଓ ଅଫିମ ଦୋକାନ ଉପରେ ଚଢ଼ାଉ ଅବ୍ୟାହତ ରହିଲା ।

ଲକ୍ଷ୍ମଣ ନାୟକଙ୍କ ଖ୍ୟାତି ଦିନକୁ ଦିନ ବଢ଼ିଲା । ତାଙ୍କ କଥାବାର୍ତ୍ତାରେ ମାଦକତା ପୂରିରହି ଥିଲା । ଲୋକଙ୍କୁ କ୍ଷଣକ ଭିତରେ ସେ ଆପଣାର କରିପାରୁଥିଲେ । ଲୋକଙ୍କୁ ମତେଇ ସେ ମାତିଲି ଥାନାକୁ ଅବରୋଧ କରିବା ପାଇଁ ପ୍ରସ୍ତୁତ ହେଲେ ।

## ମାତିଲି ଥାନା ଘେରାଉ

ଜୟପୁର କଂଗ୍ରେସ ଅଫିସ ସରକାରଙ୍କ ସନ୍ଦେହ ଘେରରେ ରହିଲା । ପୋଲିସ ସାଦା ପୋଷାକରେ ଥାଇ କର୍ମୀମାନଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଥାଆନ୍ତି । ଏଣେ କଂଗ୍ରେସ କର୍ମୀମାନେ ଭାରତଛାଡ଼ ଆନ୍ଦୋଳନ ପାଇଁ କାର୍ଯ୍ୟକ୍ରମ ଠିକ୍ କରୁଥାଆନ୍ତି । ଚାରିଆଡ଼େ, ଧ୍ୱନି ଦିଆଯିବ । ସରକାରୀ ଅଫିସ ଡାକଘର, ଥାନା ଇତ୍ୟାଦି ଘେରାଉ ହେବ । ଏଥିପାଇଁ ଚାରିଆଡ଼କୁ ଚିଠିଗଲା । ନୀଳକଣ୍ଠ ପାତ୍ରଙ୍କ ପାଖରେ ଚିଠି ଆସି ପହଞ୍ଚିଲା । ଲକ୍ଷ୍ମଣ ନାୟକ

ଓ ନୀଳକଣ୍ଠ ପାତ୍ର ଚିଠି ଉପରେ ଆଲୋଚନା କଲେ । ଅଗଷ୍ଟ ଏକୋଇଶ ତାରିଖ ଦିନ ଗାଁ ଗଣ୍ଡାର ଲୋକଙ୍କୁ ଏକାଠି କରିବାକୁ ହେବ । ସେମାନଙ୍କର ବିରାଟ ପଟୁଆର ମାଟିଲି ଯାଏ ଆସିବେ । ସେମାନେ ପୋଲିସ ଆଗରେ ବିକ୍ଷୋଭ କରିବେ । ଇଂରେଜ ସରକାର ବିରୁଦ୍ଧରେ ଡାକରା ଦେବେ । ଥାନା ଆଗରେ ଧାରଣା ଦେବେ । ଏଥିପାଇଁ ୨୧ ତାରିଖରେ ଆସିବାକୁ ଲକ୍ଷ୍ମଣ ନାୟକ ଲୋକଙ୍କ ପାଖକୁ ବାର୍ତ୍ତା ପଠାଇଲେ ।

'କର ବା ମର'କୁ ଲୋକଙ୍କ ଭାଷାରେ ଲେଖିଦିଆଗଲା । 'ତୋର ବୁତା ତୁଇକର', ନ ପାରିଲେ ମର । ଲକ୍ଷ୍ମଣନାୟକଙ୍କ ବାର୍ତ୍ତା ପାଇ ଲୋକେ ଅଣ୍ଡାଭିଡ଼ି ବାହାରିଲେ । ଗାଁ ଗାଁକୁ ଯାଇ ମଧ ଲୋକମାନଙ୍କୁ ଲକ୍ଷ୍ମଣ ନାୟକ ଭଲକରି ବୁଝାଇଲେ । ଏପରିକି ଏହି ଅଗଷ୍ଟ ବିପ୍ଳବ ପାଇଁ ଲକ୍ଷ୍ମଣ ନାୟକ ବଣ୍ଡାମାନଙ୍କୁ ମତେଇ ଦେଇ ପାରିଥିଲେ । ଲୋକଙ୍କୁ ବୁଝାଇ ଦିଆଗଲା "୨୧ ତାରିଖ ଦିନ ଯେଉଁ ବିକ୍ଷୋଭ ହେବାକୁ ଯାଉଛି ତାହା ସାମାନ୍ୟ କଥା ନୁହେଁ । ଏହି ବିକ୍ଷୋଭ ଜରିଆରେ ଆକ୍ରମଣ କରିବାକୁ ହେବ । ଅହିଂସା ବାଟ ଛାଡ଼ି ହିଂସାର ପଥ ଅନୁସରଣ କରିବା ଦରକାର ।" ଏଖବର ଜାଣି ପୋଲିସ ଆତଙ୍କିତ ହୋଇଗଲା । ଏହି ବିକ୍ଷୋଭକୁ ଭଣ୍ଡୁର କରିବା ପାଇଁ ପୋଲିସ ତରଫରୁ ଉଦ୍ୟମ ହେଲା ।

ଏହି ବିକ୍ଷୋଭକୁ ମୁକାବିଲା କରିବା ପାଇଁ ମାତିଲି ଠାରେ ଥିବା ପୋଲିସ ଯଥେଷ୍ଟ ନୁହନ୍ତି । ଏକଥା ସରକାର ଜାଣି-ପାରିଲେ । ଫଳରେ ଜିଲ୍ଲାର ଅନ୍ୟଜାଗାର ପୋଲିସ, ଅବକାରୀ ପୋଲିସ, ଫରେଷ୍ଟ ଗାର୍ଡ଼, ରାଜସ୍ୱ ବିଭାଗ କର୍ମଚାରୀ, ପିଅନ, ଆଦି ଅନ୍ୟାନ୍ୟ କମଚାରୀମାନଙ୍କୁ ମାତିଲି ପଠାଇ ଦିଆଗଲା । ତାପୂର୍ବରୁ ଗୋଟିଏ ରିଜର୍ଭ ପୋଲିସ ବାହିନୀ ମାତିଲିଠାରେ ଯାଇ ପହଞ୍ଚି ସାରିଥିଲେ ।

କୌଣସି ଲୋକ ଯେପରି ଅଗଷ୍ଟ ୨୧ ତାରିଖ ବିକ୍ଷୋଭରେ ଯୋଗ ନଦିଅନ୍ତି ସେଥିପାଇଁ ଗାଁକୁ ଗାଁ ସରକାରୀ ଲୋକଯାଇ ଜନସାଧାରଣଙ୍କୁ ଧମକ ଚମକ ଦେଲେ । କଂଗ୍ରେସ କର୍ମୀମାନଙ୍କୁ ପୋଲିସ ଯାହାକୁ ଯେଉଁଠି ଦେଖିଲେ ଗିରଫ କଲେ । ଏ ଖବର ଲକ୍ଷ୍ମଣ ନାୟକଙ୍କ ପାଖକୁ ଆସିଲା । ଲକ୍ଷ୍ମଣ ନାୟକ ସେମାନଙ୍କୁ ପରମର୍ଶ ଦେଇ କହିଲେ, ଯେଉଁ ସଂଗ୍ରାମୀମାନେ ଅତ୍ୟାଚାରିତ ଓ ଗିରଫ ହେବାର ଭୟ ଅଛି ସେମାନେ ଲୁଚିଛପି ରହି ଯାଆନ୍ତୁ । ଆଉ ଅଗଷ୍ଟ ୨.୧ ତାରିଖ ଦିନ ଲୁଚିକରି ସେମାନେ ଯାଇ ବିକ୍ଷୋଭରେ ଯୋଗ ଦେବେ ।

## ମାତିଲି ଗୁଳିକାଣ୍ଡ

୧୯୪୨ ମସିହା ଅଗଷ୍ଟ ମାସ ୨୧ ତାରିଖ । ଲୋକ ମାନଙ୍କର ସ୍ରୁଅ ମାତିଲି ଆଡ଼େ ଖୁବ୍ ଜୋରରେ ଛୁଟିଛି । ନଈନାଳ

ତ୍ରେଇଁ ଲୋକମାନେ ଧାଇଛନ୍ତି । ବର୍ଷାଦିନ, ନଈନାଳରେ ପାଣିପୂରିଛି । ତଥାପି ଲୋକେ ପାଣି ଧାର ପରି ମାଡ଼ି ଚାଲିଛନ୍ତି । ଦୂରରୁ ଆସୁଥିବା ଲୋକେ ୨୦ ତାରିଖ ଠାରୁ ବାହାରି ଆସିଥାଆନ୍ତି । ଆଗରୁ ଠିକ୍ ହୋଇଥିଲା ଲୋକେ ଯାଇ ମାତିଲି ହାଟରେ ପହଞ୍ଚିବେ । ଲୋକେ ମାଡ଼ି ଚାଲିଛନ୍ତି । ହାତରେ କଂଗ୍ରେସ ପତାକା । ମୁହଁରେ ସରକାରୀ ବିରୋଧୀ ଡାକରା ।

ସେଦିନ ଶୁକ୍ରବାର ହାଟ ପାଳି । ହାଟ ଭିଡ଼ସହ କଂଗ୍ରେସ କର୍ମୀଙ୍କ ଭିଡ଼ । ମାଳ ମାଳ ହୋଇ କଂଗ୍ରେସପତାକା ଉଡୁଛି । କାହା ମନରେ ଭୟ ନାହିଁ କି ଶଙ୍କା ନାହିଁ ଦେଶ ସ୍ୱାଧୀନ ହେବା ନିମନ୍ତେ ସମସ୍ତେ ଗୁଳିମୁହଁରେ ଛାତି ପତେଇଦେବାକୁ ପ୍ରସ୍ତୁତ । ଏତେ ଲୋକ । ଜନସମୁଦ୍ର ଚାରିଆଡ଼େ ଖାଲି କଂଗ୍ରେସ କର୍ମୀ । ଏମାନଙ୍କୁ ଦେଖି ମଦ, ଅଫିମ ଦୋକାନୀମାନେ ଜୀବନ ବିକଳରେ କିଏ କେଉଁ ଆଡ଼େ ରହିଗଲେ । ସକାଳ ନଅଟା ସମୟ । ଆକାଶରେ ମେଘ । ଏକାଠି ଠିଆ ହେବାକୁ ବଳରାମ ପୂଜାରୀ ଲୋକମାନଙ୍କୁ ବୁଝାଇ ଦେଲେ ।

ସମସ୍ତେ ଧାଡ଼ି ଧାଡ଼ି ହୋଇ ଠିଆହେଲେ । ଲକ୍ଷ୍ମଣ ନାୟକ ଗୋଟିଏ କଂଗ୍ରେସ ପତାକା ସେମାନଙ୍କ ଆଗରେ ପୋତିଦେଲେ । ପତାକାକୁ ସମସ୍ତେ ପ୍ରଣାମ କଲେ । ଲକ୍ଷ୍ମଣ ନାୟକ ସମସ୍ତଙ୍କୁ କାର୍ଯ୍ୟକ୍ରମ ବିଷୟରେ ଭଲ କରି ବୁଝାଇଦେଲେ । ସେମାନେ ଆଗ ଥାନା ଆଗକୁ ଯିବେ । ସେଠାରେ ଏକାଠି ହୋଇ

ସଭାକରିବେ । ତାପରେ କଂଗ୍ରେସ ପତାକାକୁ ଥାନା ଉପରେ ଉଡ଼ାଇ ଦିଆଯିବ । ପୋଲିସ ସେମାନଙ୍କୁ ଗିରଫ ନ କରିବା ଯାଏ ସମସ୍ତେ ସେଠାରେ ଧାରଣା ଦେଇ ବସି ରହିବେ । ଲକ୍ଷ୍ମଣ ନାୟକ କହିଲେ, ପୋଲିସ ସେମାନଙ୍କୁ ମାରଧର କଲେ ବି ଆମେ କେହି ପୋଲିସ ଉପରକୁ ହାତ ଉଠାଇବା ନାହିଁ । ଅହିଂସା ମାର୍ଗରେ ସବୁକାମ ହେବ ।

ବିକ୍ଷୋଭ ପଟୁଆର ଚାଲିଛି । ଆଗରେ ଅଛନ୍ତି ଲକ୍ଷ୍ମଣ ନାୟକ । ହାତରେ ତ୍ରିରଙ୍ଗ ପତାକା । ଅଧ ଘଣ୍ଟାଏ ଭିତରେ ଲକ୍ଷ୍ମଣ ନାୟକ ଓ ବିକ୍ଷୋଭକାରୀମାନେ ଥାନାପାଖରେ ପହଞ୍ଚି ଗଲେ । ପୋଲିସ ଇନସ୍ପେକଟର ବି.ଏସ. ନନ୍ଦ । ନିଜ ଦଳସହ ଥାନା ପାଖରୁ ୨୦୦ ଗଜ ଦୂରରେ ଠିଆ ହୋଇଛି । ବିକ୍ଷୋଭ-କାରୀଙ୍କୁ ସେ ବାଟ ଛାଡ଼ିଲା ନାହିଁ । ବହୁସମୟ ଯାଏ କଥା କଟାକଟି ଚାଲିଲା । ତାପରେ ଲୋକେ ଲକ୍ଷ୍ମଣନାୟକଙ୍କ ସହ ହାଟକୁ ଫେରିଲେ । ପୋଲିସ ସେମାନଙ୍କୁ ଅନୁସରଣ କଲା ।

ସଭା ବସିଲା । ଲକ୍ଷ୍ମଣ ନାୟକ ଭାଷଣ ଦେଲେ । ଲୋକଙ୍କୁ ଉତ୍ତେଜିତ କଲେ । ଦିନ ବାରଟା ବେଳେ ପୁଣି ଲୋକେ ଚାଲିଲେ ମାତିଲି ଥାନା ଆଡ଼କୁ । ମାତିଲି ଥାନା ସେତେବେଳେ ଚାଳଘରେ ହେଉଥାଏ । ସମସ୍ତଙ୍କ ମୁହଁରେ ମହାତ୍ମା ଗାନ୍ଧି କୀ ଜୟ ଓ ବନ୍ଦେ ମାତରମ୍ । ସେମାନଙ୍କର ଲକ୍ଷ୍ୟ ଥାନା ଉପରେ ତ୍ରିରଙ୍ଗ ପତାକା ଉଡ଼େଇବେ । ପ୍ରଥମେ ସେମାନଙ୍କ ଉପରେ ଲାଠି

ଚାର୍ଜ ହେଲା । ପୋଲିସ ନିସ୍ତୁକ ମାଡ଼ଦେଲା ଲୋକଙ୍କୁ । ଲକ୍ଷ୍ମଣ ନାୟକଙ୍କୁ ପୋଲିସ ଥାନା ବାରଣ୍ଡାକୁ ଓଟାରି ନେଲା । ତାଙ୍କ ଉପରେ ଚାଲିଲା ଅକଥନୀୟ ମାଡ଼ । ଖଣ୍ଡିଆ ଖାବରା ହୋଇ ଲକ୍ଷ୍ମଣ ନାୟକ ତଳେ ପଡ଼ିଗଲେ । ତାଙ୍କୁ ଅଧିକ କଷ୍ଟ ଦେବାପାଇଁ ପୋଲିସ ତାଙ୍କ ନିଶରେ ନିଆଁ ଲଗେଇ ଦେଲା ।

ଲକ୍ଷ୍ମଣ ନାୟକଙ୍କ ପ୍ରତି ଏପରି ଅତ୍ୟାଚାର ଦେଖି ବଳରାମ ପୂଜାରୀ ଓ ଅନ୍ୟ ନେତାମାନେ ସମ୍ଭାଳି ପାରିଲେ ନାହିଁ । ଉତ୍ତେଜିତ ଲୋକ ଥାନାର ବାଉଁଶ ବାଡ଼ ଭାଙ୍ଗି ପଶିବାକୁ ଚେଷ୍ଟାକଲେ । ପୋଲିସ ସହ ଲୋକଙ୍କର ଧସ୍ତାଧସ୍ତିରେ ପୋଲିସ କେତେଜଣ ତଳେ ପଡ଼ିଗଲେ । ଫଳରେ ପୋଲିସ ଉତ୍ୟକ୍ତ ଲୋକଙ୍କ ଉପରକୁ ଗୁଳିଚଳାଇଲେ । ପୋଲିସ ୧୨ ରାଉଣ୍ଡ ଗୁଳି ଚଳାଇଲେ । କଂଗ୍ରେସ କର୍ମୀମାନେ ଗୁଳିଭୟରେ ପାଦେ ଟଳିଲେ ନାହିଁ । ଟିସମଗୁଡ଼ା ଗ୍ରାମର କଂଗ୍ରେସ କର୍ମୀ ଲିଙ୍ଗ ଭୂମିଆ ପତାକା ଧରି ଥାନା ଉପରକୁ ଉଠିଗଲେ । ହେଲେ ତାଙ୍କର ଆଶା ପୂରଣ ହେଲା ନାହିଁ । ପତାକାଟି ସେ ଟାଙ୍ଗିବା ଆଗରୁ ପୋଲିସ ଗୁଳି ତାଙ୍କ ମୁଣ୍ଡରେ ବାଜିଲା । ସେ ସେଇଠି ଟଳିପଡ଼ିଲେ । ତାପରେ ତାଙ୍କ ହାତରୁ ପତାକା ନେଇ ନକୁଳ ମାଡ଼କମୀ ଥାନା ଚାଳ ଉପରକୁ ଚଢ଼ିଲେ । ହେଲେ ସେ ବି ପାରିଲେ ନାହିଁ । ପତାକା ଉଡ଼ାଇବା ଆଗରୁ ପୋଲିସ ଗୁଳି ତାଙ୍କ ଛାତିରେ ବାଜିଲା । ସେ ବି ସେଇଠି ଟଳି ପଡ଼ିଲେ । ପୋଲିସ ଗୁଳିରେ ପାଞ୍ଚଜଣ ମଲେ ଓ ସତର ଜଣ ଆହତ ହେଲେ । ଏହାଥିଲା ସରକାରୀ ରିପୋର୍ଟର

କଥା । ଆହୁରି ଅଧିକ ଲୋକ ମରିଥିବାର ଜଣାଯାଏ । ଯେଉଁମାନେ ସେହିଦିନ ସହିଦ ହେଲେ ସେମାନେ ହେଲେ :

| | | |
|---|---|---|
| ସମରାୟ ନାୟକ | - | ମଞ୍ଜରିଗୁଡ଼ା |
| କେଣ୍ଡେ ସୁନାଝରିଆ | - | କିଆଙ୍ଗ |
| ଗୋପୀ ପୂଜାରୀ | - | ସାନଗୁମ୍ମା |
| ବଳରାମ ଭୂମିଆ | - | ଟେମ୍ବୁରୁ ପାଲ୍ଲୀ |
| ଉଦୟନାଥ ଓଡ଼ି | - | ବଇସଖା ଘାଟ |
| ଗୁରୁକୋଟିଆ | - | ଟିମସ୍ ପୁଟ |
| ଅର୍ଜୁନ କୁଟିଆ | - | କୁନ୍ଦୁରାଗୁଡ଼ା |
| ନରସିଂହ ଓମ୍ | - | ନୂଆଗୁଡ଼ା |

ଲକ୍ଷ୍ମଣ ନାୟକଙ୍କ ଶଳା ବନସିଂ ପୂଜାରୀଙ୍କର ଗୋଟିଏ ହାତକୁ ପୋଲିସ ଦଳି ମକଚି ଭାଙ୍ଗି ଦେଇଥିଲା । ଏ ପରିସ୍ଥିତିରେ ଲକ୍ଷ୍ମଣ ନାୟକ ଦୁଃଖରେ ଭାଙ୍ଗି ପଡ଼ିଲେ । କେତେଜଣ ପୋଲିସ ଲକ୍ଷ୍ମଣ ନାୟକଙ୍କୁ ପାଖକୁ ମାଡ଼ି ଆସିଲେ । ତାଙ୍କ ମୁହଁରେ ବାୟନଟ ମାରି ଦେଲେ । ଲକ୍ଷ୍ମଣ ନାୟକ ସଂଜ୍ଞାହୀନ ହୋଇ ପଡ଼ିଲେ । ପୋଲିସ ଭାବିଲା, ଲକ୍ଷ୍ମଣ ନାୟକ ମରିଗଲେ । କଣ୍ଢାଗଲା । ସେମାନେ ଲକ୍ଷ୍ମଣ ନାୟକଙ୍କୁ ଘୋଷାରି ଘୋଷାରି ନେଇ ଥାନା ପାଖ ଖାଇରେ ପକାଇ ଦେଲେ । ଏହି ଗଣ୍ଡଗୋଳ ଭିତରେ ସେଠାକୁ ଆସିଥିବା ଫରେଷ୍ଟ ଗାର୍ଡ଼ ଜି. ରାମାୟା ଅଫିମ ଖାଇ ଚୁର ହୋଇ ଲୋକଙ୍କ ଭିତରେ ପଶି ଲୋକଙ୍କୁ ମାରଧର

କରିଥିଲା । ଫଳରେ ଲୋକେ ତାକୁ ମାରିଥିଲେ । ପୋଲିସ ଏତିକିବେଳେ ଲୋକଙ୍କ ଆଡ଼କୁ ଗୁଳି ଚଳାଇଲା । ସେହି ପୋଲିସ ଗୁଳି ରାମେୟା ମୁଣ୍ଡରେ ବାଜିଲା । ରାମେୟା ସେଠାରେ ପଡ଼ି ମରିଗଲା । ହେଲେ ପୋଲିସ ରିପୋର୍ଟ ଦେଲା ଅନ୍ୟ ପ୍ରକାରର । ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀଙ୍କ ଲାଠି ମାଡ଼ରେ ରାମେୟା ମରିଯାଇଛି । ଏହି କଥା ମଧ୍ୟ ଡ଼ାକ୍ତରଙ୍କ ପାଖରୁ ଲେଖାଇ ନିଆ ଯାଇଥିଲା ।

ମାତିଲି ଗୁଳିକାଣ୍ଡ ଯୋଗୁ ସେହି ଅଞ୍ଚଳରେ ଆତଙ୍କ ଖେଳିଗଲା । କିଛି ସମୟପରେ ଲକ୍ଷ୍ମଣ ନାୟକଙ୍କ ଚେତା ଆସିଲା । ସେ ଚାରିଆଡ଼କୁ ଚାହିଁଲେ । କହାରିକୁ ପାଇଲେ ନାହିଁ । ସେ ନିଜ ଘରକୁ ନ ଫେରି ଜୟପୁରକୁ ଆସିବାକୁ ବାହାରିଲେ । ସେ ଉଠି ପାରିଲେ ନାହିଁ । କଷ୍ଟେ ମଷ୍ଟେ ବଣେ ବଣେ ବାହାରିଲେ । ବାଟରେ ଜଙ୍ଗଲୀ ଔଷଧ ଦେହରେ ମାଲିସ କଲେ । ତାପରେ ଦୃଢ଼ ମନରେ ସେ ଆସିଲେ ଜୟପୁର ଆଡ଼କୁ । ପ୍ରଥମେ ଗଲେ ଜୟପୁର କଂଗ୍ରେସ ଅଫିସ୍‌କୁ । ସେଠାରେ କାହାକୁ ପାଇଲେ ନାହିଁ । ଜଣେ ଚିହ୍ନାଲୋକ ତାଙ୍କୁ ନିଜ ଘରକୁ ଡ଼ାକିନେଲେ । ସେଠାରେ କିଛି ଦିନ ସେ ରହିଲେ । ଏଠାରେ ରହିବା ନିରାପଦ ନୁହେଁ ଭାବି ସେ ନିଜ ଗାଁଆଡ଼କୁ ଚାଲିଲେ ।

ଏଣେ ପୋଲିସ ଦେଖିଲା ଯେ ଯେଉଁଠି ଲକ୍ଷ୍ମଣ ନାୟକଙ୍କୁ ମୃତ ଭାବି ନାଳରେ ପକାଇ ଦେଇଥିଲା ସେଠାରେ ଲକ୍ଷ୍ମଣ

ନାୟକ ଆଉ ନାହାନ୍ତି । ଲକ୍ଷ୍ମଣ ନାୟକଙ୍କୁ ଖୋଜା ଚାଲିଲା । ଗାଁ ଗହଳିରେ ପୋଲିସର ଭୀଷଣ ଅତ୍ୟାଚାର ଚାଲିଲା । ସପ୍ତାହ ପରେ ଲକ୍ଷ୍ମଣ ନାୟକ ଆସି ପହଞ୍ଚିଲେ ନିଜ ଗାଁ ତେନ୍ତୁଳିଗୁମ୍ମାରେ । ଅଗଷ୍ଟ ୨୮ ତାରିଖରେ । ଗାଁ ଲୋକେ ଲକ୍ଷ୍ମଣ ନାୟକଙ୍କୁ ଦେଖି ବହୁତ ଖୁସି ହୋଇଗଲେ । ଲୋକଙ୍କ ସାଙ୍ଗରେ ମିଶି ଲୋକଙ୍କ କଥା ଲକ୍ଷ୍ମଣ ନାୟକ ବୁଝିଲେ ।

ସେଦିନ ସେପ୍ଟେମ୍ବର ଦୁଇ ତାରିଖ ଲକ୍ଷ୍ମଣ ନାୟକ ନିତ୍ୟକର୍ମ ସାରି ରାମ ଧୁନ ଗାଇଲେ । ତାପରେ ଚରଖା ଧରି ସୂତା କାଟିଲେ । ଏତିକିବେଳେ ଗୋଟିଏ ଲୋକ ଆସି ଖବର ଦେଲା, ପୋଲିସ ତେନ୍ତୁଳି ଗୁମ୍ମାକୁ ଘେରି ରହିଛନ୍ତି । ଚାହୁଁ ଚାହୁଁ ଦୁଇଚାରିଜଣ ପୋଲିସ ତାଙ୍କ ପାଖରେ ଆସି ପହଞ୍ଚିଗଲେ । ପୋଲିସ ଲକ୍ଷ୍ମଣ ନାୟକ, ତାଙ୍କ ପୁଅ ରଘୁନାଥ ନାୟକ ଓ ଆଉକେତେଜଣ ଗାଁ ଲୋକଙ୍କୁ ହାତକଡ଼ି ପକାଇ ନେଇ ଆସିଲା ମାତିଲି ଥାନାକୁ । ବାଟରେ ଲକ୍ଷ୍ମଣ ନାୟକଙ୍କ ଶାଳକ ବନସିଂହ ପୂଜାରୀଙ୍କୁ ପୋଲିସ ଗିରଫ କଲା । ସେମାନଙ୍କୁ ନିଆଗଲା ମାତିଲି ଥାନାକୁ । ସେଠାରେ ରଖି ସେମାନଙ୍କୁ ଅନେକ କଷ୍ଟ ଦିଆଗଲା । ତାପରେ ଅଣ୍ଟାରେ ଦଉଡ଼ି ଲଗାଯାଇ ସେମାନଙ୍କୁ ଚଲେଇ ଚଲେଇ ନିଆଗଲା ଜୟପୁରକୁ । ଏପରି କଷ୍ଟ ଦେଇ ଚଲାଇ ଚଲାଇ ନେବା ବିରୁଦ୍ଧରେ ଲକ୍ଷ୍ମଣ ନାୟକ ପାଟିକଲେ । ସେ ଆଗକୁ ନ ଯାଇ ଅଟକି ଯାଇ କହିଲେ, "ଏପରି ନୃଶଂସ

ଆଦେଶ ମୁଁ ପାଳିପାରିବି ନାହିଁ। ବରଂ ମରିଯିବାଟା ସବୁଠାରୁ ଭଲ।'' ସେମାନେ ସେଠାରୁ ପାଦେ ଘୁଞ୍ଚିଲେ ନାହିଁ। ତାପରେ ସେମାନଙ୍କୁ ପୋଲିସ ଗାଡ଼ିରେ ଜୟପୁରକୁ ନିଆ ଯାଇଥିଲା।

**ଲକ୍ଷ୍ମଣ ନାୟକଙ୍କ ବିଚାର**

ଲକ୍ଷ୍ମଣ ନାୟକ ଓ ତାଙ୍କର ସହକର୍ମୀ ୫୩ ଜଣଙ୍କ ବିରୁଦ୍ଧରେ ନାନା ହିଂସାକାଣ୍ଡ ଅଭିଯୋଗ ମାନ ଅଣାଯାଇଥିଲା। ତଳ କୋର୍ଟରେ ସେମାନଙ୍କ ବିଚାର ହେଲା। ତଳକୋର୍ଟ ଏହି କେଶକୁ ଉପର କୋର୍ଟକୁ ପଠାଇ ଦେଲେ। ଅତିରିକ୍ତ ସେସନସ୍ ଜଜଙ୍କ କୋର୍ଟରେ ଏହି ମକଦମା ବିଚାର କରାଗଲା। ଏମାନଙ୍କ ବିରୁଦ୍ଧରେ ତେତିଶ ଜଣ ସାକ୍ଷୀ ଦେଇଥିଲେ। ସରକାରଙ୍କ ପକ୍ଷରୁ ଜୟପୁର ରାଜାଙ୍କ ଓକିଲ ମକଦ୍ଦମା ଲଢୁଥିଲେ । ହେଲେ ଲକ୍ଷ୍ମଣ ନାୟକ ଓ ତାଙ୍କ ସାଥୀଙ୍କ ପାଇଁ ଲଢ଼ିବା ପାଇଁ କୌଣସି ଓକିଲ ନିଯୁକ୍ତ ହୋଇ ନ ଥିଲେ।

ସରକାରଙ୍କ ତରଫରୁ ସଫେଇ ଦିଆଗଲାଯେ, ଲକ୍ଷ୍ମଣ ନାୟକ ଓ ବଳରାମ ପୂଜାରୀ ସରକାରୀ ଅଫିସକୁ ଆକ୍ରମଣ କରିବାପାଇଁ ଲୋକଙ୍କୁ ଉତ୍ତେଜିତ କରିଥିଲେ। ମାଜିଷ୍ଟ୍ରେଟଙ୍କ ଆଦେଶ ମାନିଲେ ନାହିଁ। ସେହି ଜାଗା ଛାଡ଼ି ଗଲେ ନାହିଁ। ପୋଲିସକୁ ଠେଲି ଥାନା ଭିତରକୁ ପ୍ରବେଶ କରିଥିଲେ। ସବ୍-ଇନ୍ସପେକ୍ଟର ରାମମୂର୍ତ୍ତି ଓ କନେଷ୍ଟବଳ ମହାନ୍ତିଙ୍କ ଉପରକୁ ଲାଠି

ଚଳାଇଥିଲେ । ସେମାନଙ୍କୁ ଲାଠିରେ ଗୁରୁତର ଭାବରେ ଆହତ କରିଥିଲେ । ତାପରେ ପୋଲିସ ଲାଠି ଚାର୍ଜ କରିଥିଲା । ସତ୍ୟାଗ୍ରହୀ ଅଧିକ ଥିଲେ । ଏଣୁ ପୋଲିସ ଅଫିସର ଓ କନେଷ୍ଟବଳ ଊଣା ଅଧିକ ଆହତ ହୋଇଥିଲେ । ଫରେଷ୍ଟ ଗାର୍ଡ଼ ରାମାୟାଙ୍କୁ ବଳରାମ ପୂଜାରୀ ଲାଠିରେ ଆଘାତ କରିଥିଲେ । ଫଳରେ ରାମାୟାର ମୁଣ୍ଡଫାଟି ଯାଇଥିଲା । ଲକ୍ଷ୍ମଣ ନାୟକ ଓ ତାଙ୍କ ସାଥୀଙ୍କୁ କଠିନ ଦଣ୍ଡମିଳିବା ନିମନ୍ତେ ବାଟ ମିଳିଗଲା । ଏଥିପାଇଁ ଯେଉଁମାନେ ସରକାରଙ୍କ ତରଫରୁ ସାକ୍ଷୀ ହୋଇଥିଲେ ସେମାନେ ସବୁଥିଲେ ସରକାରୀ ଲୋକ ।

ଲକ୍ଷ୍ମଣ ନାୟକ ଓ ତାଙ୍କ ଦଳ ଯେତେ ପ୍ରକାର ସତ୍ୟ କଥା କହିଲେ ବି କେହି ଶୁଣି ନ ଥିଲେ । ବିଚାରପତି ସରକାର ଓ ପୋଲିସ ତରଫରୁ ଜମାନ ବନ୍ଦୀ ଶୁଣି ବିବରଣୀ ସତ୍ୟ ବୋଲି ଭାବିଲେ । ଲକ୍ଷ୍ମଣ ନାୟକ ତାଙ୍କ ଦଳର ଜମାନବନ୍ଦୀ ପୂରା ଭୁଲ ବୋଲି ପ୍ରକାଶ କଲେ । ରାମାୟାର ମୃତ୍ୟୁପାଇଁ ଲକ୍ଷ୍ମଣ ନାୟକଙ୍କୁ ଜଜ ଦୋଷୀ ସାବସ୍ତ୍ୟ କଲେ । ୩୦୨ ଧାରା ଅନୁଯାୟୀ ସେ ଲକ୍ଷ୍ମଣ ନାୟକଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ଫାଶୀରେ ଝୁଲାଇ ରଖିବାକୁ ନିର୍ଦ୍ଦେଶ ଦେଲେ । ବଳରାମ ପୂଜାରୀ ଆଦି ୪୯ ଜଣକୁ ଥାନା ପୋଡ଼ି ପ୍ରଭୃତି ବିଭିନ୍ନ ହିଂସା କାଣ୍ଡ ପାଇଁ ଦୋଷୀ କରାଯାଇ ଆଜୀବନ କାରାଦଣ୍ଡରେ ଦଣ୍ଡିତ କଲେ ।

ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦେବା ପାଇଁ ବ୍ରହ୍ମପୁର ଜେଲକୁ ପଠାଇ ଦିଆଗଲା । ଅନ୍ୟ ୪୯ଜଣ ସଶ୍ରମ କାରାଦଣ୍ଡ ଭୋଗୀବାକୁ କୋରାପୁଟ ଜେଲରେ ରହିଲେ ।

## ହସିହସି ଫାଶୀଖୁଣ୍ଟରେ ଚଢ଼ିଲେ

ବ୍ରହ୍ମପୁର ଥିଲା କେନ୍ଦ୍ର ଜେଲ । ଏଠାରେ ସତ୍ୟାଗ୍ରହୀମାନେ ଆସି ରହୁ ଥିଲେ । ଲକ୍ଷ୍ମଣ ନାୟକଙ୍କୁ ନଭେମ୍ବର ଷୋହଳ ତାରିଖଠାରୁ ଏକ ନିର୍ଜନ କୋଠରିରେ ରଖାଯାଇଥାଏ । ଜେଲର ଅନ୍ୟବନ୍ଦୀମାନେ ତାଙ୍କୁ ଦେଖିବାକୁ ଚାହୁଁଥିଲେ । ହେଲେ ସେମାନଙ୍କୁ ସେହି ସୁଯୋଗ ଦିଆଯାଉ ନ ଥାଏ । ଲକ୍ଷ୍ମଣ ନାୟକ ରହୁଥିଲେ ଚଉଦ ନମ୍ବର ସେଲରେ । ତାଙ୍କୁ କେତେକ ଅଟକବନ୍ଦୀ ମଝିରେ ମଝିରେ ଯାଇ ବାହାରୁ ଦେଖି ଆସୁଥିଲେ । ସେ ଲୋକଙ୍କୁ କହୁଥିଲେ, ‘‘ମୁଁ ଯାଉଛି । ହେଲେ ଗାନ୍ଧି ମହାତ୍ମାଙ୍କ ତ୍ୟାଗ ଫଳରେ ଦେଶ ସ୍ୱାଧୀନ ହେବ ।’’

ସେତେବେଳେ ବ୍ରହ୍ମପୁର ଜେଲର ଦୁଇ ନମ୍ବର ୱାର୍ଡ଼ରେ ନିତ୍ୟାନନ୍ଦ କାନୁନଗୋ, ପ୍ରାଣକୃଷ୍ଣ ପଢ଼ିଆରୀ, ରାଜକୃଷ୍ଣ ବୋଷ, ଚାରି ନମ୍ବର ୱାର୍ଡରେ ସୁରେନ୍ଦ୍ର ଦ୍ୱିବେଦୀ ଓ ଆଠ ନମ୍ବର ୱାର୍ଡ଼ରେ ରାଧାନାଥ ରଥ ଓ ଉମା ଚରଣ ପଟ୍ଟନାୟକ ଆଦି ବିଶିଷ୍ଟ କଂଗ୍ରେସ ନେତାମାନେ ରହୁଥିଲେ ।

କୋରାପୁଟର କଂଗ୍ରେସ ନେତା ରାଧାକୃଷ୍ଣ ବିଶ୍ୱାସରାୟ, ରାଧା ମୋହନ ସାହୁ ଓ ସଦାଶିବ ତ୍ରିପାଠୀ ଆଦି ବ୍ରହ୍ମପୁର

ଜେଲରେ ଥିଲେ । ସେମାନେ ଲକ୍ଷ୍ମଣ ନାୟକଙ୍କୁ ଫାସି ଦିଆଯିବା ଖବର ଶୁଣି ବହୁତ ବିଚଳିତ ହୋଇ ପଡ଼ିଥିଲେ ।

ଏହି ନେତାମାନେ ପାଟନା ହାଇକୋଟରେ ଏହି ଦଣ୍ଡାଦେଶ ବିରୁଦ୍ଧରେ ଅପିଲ କରିବା ପାଇଁ ଠିକ୍ କଲେ । ଏଥିପାଇଁ ବ୍ରହ୍ମପୁରର ଓକିଲ ରାଧା ଚରଣ ଦାସଙ୍କ ପାଖକୁ ଲକ୍ଷ୍ମଣ ନାୟକଙ୍କ ଦସ୍ତଖତରେ ଗୋଟିଏ ଚିଠି ପଠାଇଲେ । ପାଟଣା ହାଇକୋର୍ଟରେ ଅପିଲ କରାଗଲା । ଲକ୍ଷ୍ମଣ ନାୟକ ଓ ତାଙ୍କ କର୍ମୀମାନଙ୍କ ତରଫରୁ ପୀତାମ୍ବର ମିଶ୍ର ମକଦ୍ଦମା ଲଢ଼ିଲେ । ପୀତାମ୍ବର ମିଶ୍ର ଠିକ୍ ଭାବରେ କେଶ ଲଢ଼ିଲେ । ଲକ୍ଷ୍ମଣ ନାୟକ ଅହିଂସାର ଉପାସକ ଓ ସେ ରାମାୟା ମୃତ୍ୟୁ ପାଇଁ ଦାୟୀ ନୁହନ୍ତି ବୋଲି ଯୁକ୍ତି ବାଢ଼ିଲେ । ହେଲେ ଗୋରା ଜଜ ବ୍ରାଉନ୍ ଓ ମେରେ-ଡିଥି ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ୧୯୪୩ ମସିହା ଜାନୁଆରୀ ୨୫ର ତାରିଖ ଦିନ ସେମାନେ ତାଙ୍କ ରାୟ ଦେଲେ । ଦଣ୍ଡାଦେଶକୁ କାଏମ ରଖିଲେ ।

କେତେଜଣ ନେତା ଉମା ଚରଣ ପଟ୍ଟନାୟକ, ଭାଗୀରଥି ମହାପାତ୍ର, ଲୋକ ନାଥ ମିଶ୍ର ମିଶି ପ୍ରିଭି କାଉନସିଲକୁ ଅପିଲ କଲେ । ହେଲେ ଠିକ୍ ସମୟରେ ଅପିଲ ଦାଖଲ ହୋଇପାରି ନ ଥିଲା । ସପ୍ତାହ ପରେ ରାୟ ମିଳିଲା, 'ଯେଉଁ ଆଇନ ବଳରେ ଲକ୍ଷ୍ମଣ ନାୟକଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇଛି ତାହା ଅସିଦ୍ଧ ।' ଏକଥା କଲିକତା ହାଇକୋର୍ଟ ରାୟ ଦେଇଥିଲେ । ହେଲେ ଲକ୍ଷ୍ମଣ

ନାୟକ ସେତେବେଳକୁ ଆଉ ନ ଥିଲେ। ଫାଶୀ ପାଇ ସାରିଥିଲେ।

୧୯୪୩ ମାର୍ଚ୍ଚ ୨୯ ତାରିଖ ଦିନ ଲକ୍ଷ୍ମଣ ନାୟକଙ୍କୁ ବ୍ରହ୍ମପୁର ଜେଲରେ ଫାଶୀ ଦିଆଗଲା। ତା' ପୂର୍ବରୁ ଲକ୍ଷ୍ମଣଙ୍କର ଶେଷ ଇଚ୍ଛା ଅନୁଯାୟୀ ସଦାଶିବ ତ୍ରିପାଠୀ, ରାଧାକୃଷ୍ଣ ବିଶ୍ୱାସ ରାୟ ଓ ରାଧା ମୋହନ ସାହୁ ଲକ୍ଷ୍ମଣ ନାୟକଙ୍କୁ ଭେଟିଥିଲେ। ଲକ୍ଷ୍ମଣ ନାୟକ ହସିହସି କହିଥିଲେ, ''ମୋ ପାଇଁ ଦୁଃଖ କରିବ ନାହିଁ। ସ୍ୱରାଜ୍ୟ ଦେଖି ନ ପାରିବାରୁ ମୋ ମନ ଟିକିଏ ଦୁଃଖ। ଏଇ ଅଭାବ ଜୀବନରେ ରହିଗଲା।'' ସେ ମରିଥାଚି ଅମର।

***

